# କୁସୁମାଞ୍ଜଳି ଆଲୋଚନା

## କବି ମଧୁସୂଦନଙ୍କ ଜୀବନୀ

( ୧ )

ମଧୁସୂଦନ ପୁରୀ ସହରରେ ଖ୍ରୀ:୧୮୫୩ ଜାନୁଏରୀ ୨୯ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ଭଗୀରଥି ରାଓ ରାଜ୍ୟ ମହେନ୍ଦ୍ରୀ ଷନ୍ନିସ୍ତ ଥିଲେ । ସେ ପୁଲିସ ବିଭାଗରେ କାର୍ଯ୍ୟ କରୁଥିଲେ । ପୁରୀ ଜିଲ୍ଲା ସ୍କୁଲରେ ମଧୁସୂଦନ ପଢୁଥିବା ବେଳେ କବିବର ରାଧାନାଥ ସେଠାରେ ଥିଲେ ଶିକ୍ଷକ । ୧୮୭୧ ଖ୍ରୀଷ୍ଟାବ୍ଦରେ ମଧୁ କଟକରେ ଏଫ୍. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ବି. ଏ. ପଢିବା ପାଇଁ କଲିକତା ଯିବାକୁ ମନସ୍ଥ କରିଥିଲେ । କିନ୍ତୁ ନାନା ପ୍ରତିବନ୍ଧକ ହେତୁ ତାଙ୍କର ମନୋରଥ ସିଦ୍ଧ ହୋଇ ପାରି ନଥିଲା । ପ୍ରଥମେ ସେ ଯାଜପୁର ଏମ. ଇ. ସ୍କୁଲରେ ଶିକ୍ଷକତା ଆରମ୍ଭ କଲେ । ସେତେବେଳେ ତାଙ୍କ ବୟସ ମାତ୍ର ଅଠର ବର୍ଷ । ସେଠାରେ ଉତ୍କଳର ବ୍ୟାସକବି ଫକୀର ମୋହନଙ୍କ ସଙ୍ଗେ ତାଙ୍କର ପରିଚୟ ହେଲା । ପ୍ରାୟ ଦେଢ ବର୍ଷ ପରେ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଦ୍ୱିତୀୟ ଶିକ୍ଷକରୂପେ ସେ ନିଯୁକ୍ତ ହେଲେ । ବିଧି ବିଧାନରେ ମଧୁସୂଦନଙ୍କ ପୂଜ୍ୟପାଦ ଗୁରୁ ରାଧାନାଥ ବାଲେଶ୍ୱରରେ ଠିକ୍ ସେହି ସମୟରେ ଡେପୁଟି ଇନ୍ସ୍‌ପେକ୍ଟର ଥିଲେ । ଫକୀରମୋହନ ବାଲେଶ୍ୱରରେ ଧନକୁବେର ବୈକୁଣ୍ଠ-

ନାଥ ଦେ'ଙ୍କର ପୃଷ୍ଠ-ପୋଷକତାରେ "ସଂବାଦ-ବାହିକା "ନିଜ ସଂପାଦକତ୍ୱରେ ପ୍ରକାଶ କରୁଥାନ୍ତି । ବଶିଷ୍ଟ ସାହିତ୍ୟିକ ବିତୟଙ୍କର ବାଲେଶ୍ୱରରେ ଏହା ଯଥାର୍ଥରେ ସାରସ୍ୱତ ପୁଣ୍ୟତ୍ରିବେଣୀ କହିଲେ ଅତ୍ୟୁକ୍ତି ହେବନାହିଁ । ସାହିତ୍ୟର ଉନ୍ନତିଲାଗି ଏମାନେ ମିଳିମିଶି ଉତ୍କଳ ଦର୍ପଣ (ମାସିକ ପତ୍ରିକା) ପ୍ରକାଶ କଲେ । ସାହିତ୍ୟ ଚର୍ଚ୍ଚା ପାଇଁ ଏହି ରଥୀମାନଙ୍କୁ ଉନ୍ମୁକ୍ତ କ୍ଷେତ୍ର ମିଳିଗଲା । ପ୍ରଥମେ ପ୍ରଥମେ ଅନୁବାଦର ଆବଶ୍ୟକତା ଅନୁଭୂତ ହେଲା । ରାଧାନାଥ ମେଘଦୂତ ଓ ଇତାଲୀୟଯୁବା ସେହି ସମୟରେ ଅନୁବାଦ କରିବାକୁ ପ୍ରବୃତ୍ତ ହୋଇଥିଲେ ।ମଧୁସୂଦନଙ୍କ ଅଯୋଧ୍ୟା ପ୍ରତ୍ୟାଗମନ ପ୍ରଭୃତି ସେହି ସମୟର ଲେଖା । ଉତ୍କଳର ଜାତୀୟ ଇତିହାସରେ ସେହି ସମୟଟି ବଡ଼ ସଙ୍କଟମୟ ଥିଲା । ଓଡ଼ିଆ-ଭାଷାରେ ପାଠ୍ୟପୁସ୍ତକର ଅଭାବ ଦର୍ଶାଇ କେହି କେହି ବଙ୍ଗୀୟ ବଙ୍ଗଭାଷା ଲିଖିତ ପାଠ୍ୟ ଚଳାଇବାକୁ ଉଦ୍ୟତ ହେଉଥିଲେ । ତେଣୁ ମଧୁସୂଦନ ପ୍ରବନ୍ଧମାଳାର ବିଭିନ୍ନ ଲେଖା ଲେଖିବାକୁ ମନପ୍ରାଣ ଢାଳି ଦେଇଥିଲେ । ସେଠାରେ ଦୁଇବର୍ଷ ଅବସ୍ଥାନ ପରେ କଟକ ହାଇସ୍କୁଲକୁ ସେ ସ୍ଥାନାନ୍ତରିତ ହେଲେ । କିଛିକାଳ ପରେ ସେ କଟକ ଜିଲାର ଶିକ୍ଷା ବିଭାଗୀୟ ଡେପୁଟି ଇନ୍‌ସ୍‌ପେକ୍ଟର ପଦକୁ ଉନ୍ନୀତ ହେଲେ । କର୍ମନିଷ୍ଠା ବଳରେ ସେ ତାହାପରେ ପ୍ରଥମତଃ କଟକ କଲେଜିଏଟ୍ ସ୍କୁଲରେ ପ୍ରଧାନ ଶିକ୍ଷକ, ଦ୍ୱିତୀୟତଃ କଟକ ଟ୍ରେନିଂ ସ୍କୁଲର ପ୍ରଧାନ ଶିକ୍ଷକ ଓ ଶେଷରେ ୧୯୦୭ ଖ୍ରୀଷ୍ଟାବ୍ଦରେ ସ୍କୁଲ ବିଭାଗର ଇନ୍‌ସ୍‌ପେକ୍ଟର ହୋଇ ପାରିଥିଲେ । ସେ ଯାଜପୁରରେ ମାସିକ ଟ୪୫୯ଙ୍କା ଦରମାରେ ନିଯୁକ୍ତ ହୋଇ ଥିଲେହେଁ ଶେଷରେ ମାସିକ ଟ ୫୦୦୯ ଙ୍କା ପାଇ ପାରିଥିଲେ । ସେବର୍ଷ ତାଙ୍କର ବିଭିନ୍ନ ଉନ୍ନତିମୂଳକ ଓ ଲୋକହିତକର କାର୍ଯ୍ୟ ଦେଖି

ସରକାର ତାଙ୍କୁ ରାୟବାହାଦୁର ଉପାଧିରେ ଭୂଷିତ କରିଥିଲେ । ଖ୍ରୀଃ ୧୯୧୨ ଡ଼ିସେମ୍ବର ୨୫ ତାରିଖରେ ତାଙ୍କର ପରଲୋକ ହୋଇଥିଲା । ଟ୍ରେନିଂ ସ୍କୁଲରେ ପ୍ରଧାନ ଶିକ୍ଷକ ଥିବାବେଳେ ସେ ଯେଉଁ ଆଲୋଚନା ସଭା ଗଢିଥିଲେ ତାହା ହେଉଛି ଆଜିର ଲବ୍ଧପ୍ରତିଷ୍ଠ ଉତ୍କଳ ସାହିତ୍ୟ ସମାଜର ମୂଳଭିତ୍ତି । ତାଙ୍କରି ପ୍ରେରଣାରେ 'ନବ ସମ୍ବାଦ' 'ଆଶା' ଓ 'ବ୍ରାହ୍ମ' ପତ୍ରିକାର ଜନ୍ମ । ବିଖ୍ୟାତ ମାସିକ 'ଉତ୍କଳ ସାହିତ୍ୟ' ମଧ୍ୟ ତାଙ୍କଠାରେ କମ୍ ଋଣୀ ନୁହେଁ । ସେ ଯେପରି ସାହିତ୍ୟ ପ୍ରେମୀ, ସେହିପରି ବିଦ୍ୟାନୁରାଗୀ । ତାଙ୍କ ପ୍ରତିଷ୍ଠିତ ( କଟକରେ ) ଉଚ୍ଚ ବିଦ୍ୟାଳୟ, ମହାରାଣୀ ଭିକ୍ଟୋରିଆଙ୍କ ନାମାନୁସାରେ, "ଟାଉନ୍ ଭିକ୍ଟୋରିଆ ହାଇସ୍କୁଲ" କହାଯାଉଥିଲା । ଗତ ଅଗଷ୍ଟ ୧୫ ତାରିଖ ପରେ ମୁକ୍ତ ଭାରତରେ ସେହି ନାମର ଆଉ ସାର୍ଥକତା ନଦେଖି ବିଦ୍ୟାଳୟ କର୍ତ୍ତୃପକ୍ଷ ନାମଟିର ପରିବର୍ତ୍ତନ କରି ନୂଆ ନାମ ଦେଇଛନ୍ତି "ଭକ୍ତମଧୁ ବିଦ୍ୟାପୀଠ" ।

# ମଧୁସୂଦନଙ୍କ କାବ୍ୟ—କବିତା

ରଚନା ବା ପ୍ରକାଶ ସମୟ ଅନୁକ୍ରମେ ମଧୁସୂଦନଙ୍କ କବିତାଗୁଡ଼ିକୁ ନିମ୍ନଲିଖିତ ଭାବରେ ସଜା ଯାଇପାରେ :—

| ଖ୍ରୀଷ୍ଟାବ୍ଦ | ରଚନାର ନାମ |
|---|---|
| ୧୮୭୩ | ପ୍ରଣୟୀର ଅଦ୍ଭୁତ ପରିଣାମ |
| ୧୮୭୩-୭୪ | କବିତାବଳୀ(ଦୁଇଭାଗରେ ବିଭକ୍ତ) |
| ୧୮୮୦-୮୧ | ଛନ୍ଦମାଳା(ପ୍ରଥମଭାଗ) |
| ୧୮୯୪ ୯୫ | ସଙ୍ଗୀତମାଳା (୧ମଭାଗ) |
| ୧୮୯୫-୯୬ | ସଙ୍ଗୀତମାଳା (୨ୟଭାଗ) |
| ” | ଛନ୍ଦମାଳା (୨ୟଭାଗ) |
| ୧୮୯୭ | ହେମମାଳା |
| ୧୯୦୧ | ବାଲରାମାୟଣ (ଅପୂର୍ଣ୍ଣ) |
| ” | ବସନ୍ତଗାଥା |
| ୧୯୦୩ | କୁସୁମାଞ୍ଜଳି |
| ୧୯୦୭-୮ | ଉତ୍ତରରାମ ଚରିତ |
| ୧୯୦୮ | ମହର୍ଷି ଦେବେନ୍ଦ୍ରନାଥ |
| ” | ଉତ୍କଳଗାଥା |
| ୧୯୧୨ | ହିମାଚଳେ ଉଦୟ ଉତ୍ସବ |
| ” | ବାମଣ୍ଡା ରାଜପ୍ରଶସ୍ତି |
| ” | ଶୋକ ଶ୍ଳୋକ |
| ୧୯୦୮-୧୨ | ବିବିଧ କବିତା |

ଏଠାରେ ମନେ ରଖିବାକୁ ହେବ, ଯେଉଁ ବର୍ଷ ଯେଉଁ ଗ୍ରନ୍ଥ ପ୍ରକାଶ ପାଇଥିଲା, ଠିକ୍ ସେଇ ବର୍ଷକ ମଧ୍ୟରେ ସମଗ୍ର ଗ୍ରନ୍ଥଟି ଲିଖିତ ହୋଇ ନଥିଲା । ତେଣୁ ମୋଟା ମୋଟି ଗ୍ରନ୍ଥ ଗୁଡ଼ିକର ମୁଖ୍ୟତଃ ପ୍ରକାଶ ସମୟ ଦୃଷ୍ଟିରୁ ଏଇ ତାଲିକା ପ୍ରଦତ୍ତ ହୋଇଛି ।

---

## କବିଙ୍କ ଉପରେ ବିଭିନ୍ନ ପ୍ରଭାବ

କବିଙ୍କୁ ଭଲ ଭାବରେ ଚିହ୍ନିବାକୁ ହେଲେ ତାଙ୍କ ଉପରେ ପଡ଼ିଥିବା ପ୍ରଭାବ ଗୁଡ଼ିକୁ ଭିନ୍ନ ଭିନ୍ନ ବିଶ୍ଳେଷଣ କରି ଦେଖିବାକୁ ହେବ । କାର୍ଯ୍ୟ କାରଣର ଯେପରି ନିତ୍ୟ ସମ୍ବନ୍ଧ ବର୍ତ୍ତମାନ, କବିଙ୍କ ଉପରେ ପଡ଼ିଥିବା ବିଭିନ୍ନ ପ୍ରଭାବ ସଙ୍ଗେ ତାଙ୍କ କାବ୍ୟ-କବିତାର ସେପରି ଅବିଚ୍ଛେଦ୍ୟ ସମ୍ପର୍କ ବିଦ୍ୟମାନ । ମଧୁସୂଦନଙ୍କ କବିତାବଳୀର ଯେଉଁ ତାଲିକା ଉପରେ ଦିଆଯାଇଛି, ସେଗୁଡ଼ିକର ରଚନା କାରଣ-ବିହୀନ ନୁହେଁ । ମଧୁସୂଦନ—ଗ୍ରନ୍ଥାବଳୀର ମୂଳସୂତ୍ର ଧରିବାକୁ ହେଲେ କବିଙ୍କ ଉପରେ ପଡ଼ିଥିବା ନିମ୍ନଲିଖିତ ବିଭିନ୍ନ ପ୍ରଭାବ ଓ ସେଗୁଡ଼ିକର କାର୍ଯ୍ୟକାରିତା ବିସ୍ମୃତ ହେବା ଆଦୌ ଉଚିତ ନୁହେଁ ।

୧—କବିବର ରାଧାନାଥଙ୍କ ସଙ୍ଗେ ତାଙ୍କର ଘନିଷ୍ଠ ସମ୍ପର୍କ ସବ ପ୍ରଥମେ ଉଲ୍ଲେଖ୍ୟ । କବିଙ୍କ ନିଜ ଭାଷାରେ ରାଧାନାଥ ହେଉଛନ୍ତି "ପୂଜ୍ୟପାଦ କୈଶୋର ଗୁରୁ, ପରମାତ୍ମୀୟ ଓ ଯୌବନ ସଖା, ଜୀବନର ପରମହିତୈଷୀ, ପବିତ୍ର ସାହିତ୍ୟ ସେବା ବ୍ରତରେ ପଥପ୍ରଦର୍ଶକ" । ଏ ଦୁହିଁଙ୍କ

ମଧ୍ୟରେ ଯେଉଁ ସମ୍ପର୍କ ଥିଲା ତାହା ଏକାନ୍ତ ପବିତ୍ର ।
ରାଧାନାଥଙ୍କୁ ସେ କି ଦୃଷ୍ଟିରେ ଦେଖୁଥିଲେ, ତାଙ୍କର ନିମ୍ନୋଦ୍ଧୃତ
ଉକ୍ତିରୁ ସ୍ପଷ୍ଟ ପ୍ରକାଶ ପାଏ ।

କବି ମାତ୍ର ରାଧାନାଥ ସାଧାରଣଙ୍କର
କିନ୍ତୁ ଦେବ ! ଜାଣୁଥିବ କିଥିଲେ ମୋହର
କୈଶୋରର ଶିକ୍ଷାଗୁରୁ, ସଦା ସୁବତ୍ସଳ
ଯୌବନର ପ୍ରାଣବନ୍ଧୁ ,ଏକାନ୍ତ ସରଳ
ସାହିତ୍ୟ ସାଧନା କ୍ଷେତ୍ରେ ଶିକ୍ଷା ଦାତା ସଖା

× × × ×

ଏକାନ୍ତ ଚରଣତଳେ ସୁଖେ ବସିବାର
କାହିଁଗଲା ମୋରସେହି ପୂର୍ଣ୍ଣ ଅଧିକାର ।

ରାଧାନାଥଙ୍କ ମୃତ୍ୟୁରେ କବିଙ୍କର ଅନ୍ତରର ଶୋକଚ୍ଛ୍ୱାସ
ଉଦ୍ଧୃତ ପଦ୍ୟଗୁଡ଼ିକରେ ଅଭିବ୍ୟକ୍ତ । ଦୂରରେ ରହିବାବସ୍ଥାରେ
ସେ ତାଙ୍କର (ମଧୁ) ଉଜ୍ଜ୍ୱଳ ପ୍ରତିଭାର ଅକାଟ୍ୟ ପ୍ରମାଣ ପାଇ
ଥିଲେ । ସେଥିପାଇଁ ତାଙ୍କର ଶିକ୍ଷା,ଦୀକ୍ଷା, ସମସ୍ତ ଦିଗରେ ଯତ୍ନ
ନେଉଥିଲେ । ରାଧାନାଥ ମଧୁସୂଦନଙ୍କୁ କେବଳ ବିଦ୍ୟାଳୟର
ପାଠ୍ୟ ପଢ଼ାଉ ନଥିଲେ, ତାହା ସହିତ ପ୍ରାଚୀନ ଓଡ଼ିଆ ଓ
ଇଂରାଜୀ ସାହିତ୍ୟ ପ୍ରତି ମଧ୍ୟ ତାଙ୍କର ପୂର୍ଣ୍ଣ ଦୃଷ୍ଟି ଆକର୍ଷଣ
କରଥିଲେ । ରାଧାନାଥ ସ୍ୱଭାବତଃ ପ୍ରକୃତିର ଉପାସକ ।
ସନ୍ଧ୍ୟାବେଳେ ଓ ଏକା ନ ଅବକାଶ ହେଲେ ମଧୁସୂଦନଙ୍କୁ
ସଙ୍ଗରେ ନେଇ ସାଗରତୀର କିମ୍ବା ଅନ୍ୟ କୌଣସି ସୁନ୍ଦର
ପ୍ରାକୃତିକ ଦୃଶ୍ୟ ଦେଖିବାକୁ ଯାଉଥିଲେ । କବିବର
ରାଧାନାଥଙ୍କର କବିତ୍ୱ, ପ୍ରକୃତି-ସୌନ୍ଦର୍ଯ୍ୟ ପିପାସା, କାର୍ଯ୍ୟ

ଷାବ ଓ ବଙ୍ଗଳା ସାହିତ୍ୟ ଚର୍ଚ୍ଚା ମଧୁସୂଦନଙ୍କୁ ଯଥେଷ୍ଟ ପରିମାଣରେ ପ୍ରଭାବିତ କରିଥିଲା । ମଧୁସୂଦନ-ଗ୍ରନ୍ଥାବଳୀ ଆଲୋଚନା କଲେ ଏହାର ସତ୍ୟତା ଉପଲବ୍ଧ ହେବ ।

୨ । ପଣ୍ଡିତ ହରିହର ଦାସଙ୍କ ସଙ୍ଗେ ମଧୁସୂଦନଙ୍କ ପରିଚୟ ତାଙ୍କ ଜୀବନରେ ଏକ ନବୀନ ଯୁଗର ସୂତ୍ରପାତ କଲା । ପଣ୍ଡିତ ମହାଶୟ କେବଳ ଉତ୍କଳରେ ଅଖଣ୍ଡ ଖ୍ୟାତି ଅର୍ଜନ କରି ନ ଥିଲେ, ତାଙ୍କର ଗଭୀର ଶାସ୍ତ୍ରଜ୍ଞାନ ଓ ଅନର୍ଗଳ ବକ୍ତୃତାରେ ବାରାଣସୀ ପ୍ରଭୃତିର ପଣ୍ଡିତମାନେ ମଧ୍ୟ ଚମତ୍କୃତ ହୋଇ ଯାଉଥିଲେ । କୁସୁମାଞ୍ଜଳିରେ ଭାରତୀୟ ଦର୍ଶନର ଆନନ୍ଦବାଦ ଓ ଅଧ୍ୟାତ୍ମବାଦର ଯେଉଁ ଉଲ୍ଲେଖ ଦେଖାଯାଏ, ତାହାର ଆଦ୍ୟ ଉତ୍ସରୂପେ ହରିହର ଦାସଙ୍କ ପାଣ୍ଡିତ୍ୟ ସ୍ୱୀକାର କରିଯାଇପାରେ । ଅବଶ୍ୟ ପଣ୍ଡିତ ମହାଶୟଙ୍କର କୌଣସି ନିର୍ଦ୍ଦିଷ୍ଟ ଧର୍ମମତ ନ ଥିଲା ପୁଣି ବ୍ରାହ୍ମଧର୍ମ ଗ୍ରହଣ କଲା ପରେ କବି ହିନ୍ଦୁ ଶାସ୍ତ୍ରରେ ପ୍ରବେଶ ଲାଭ କରିବାପାଇଁ ଅଧିକ ଯତ୍ନଶୀଳ ହୋଇଥିଲେ । କିନ୍ତୁ ରାଧାନାଥ ନିଜର ପ୍ରିୟଶିଷ୍ୟ ମଧୁସୂଦନଙ୍କ ସଙ୍ଗେ ଯାଇ ଦର୍ଶନ ଶାସ୍ତ୍ରର ଯେଉଁ ଚର୍ଚ୍ଚା କରୁଥିଲେ ତାହାଦ୍ୱାରା କବି କମ୍ ଉପକୃତ, ଉଦ୍‌ବୋଧିତ ଓ ପ୍ରଭାବିତ ହୋଇ ନ ଥିଲେ । ପଣ୍ଡିତ ମହାଶୟଙ୍କଠାରୁ କବି ଦାର୍ଶନିକ ଜ୍ଞାନର ଆଲୋକ ପାଇଥିଲେହେଁ ନିଜର ଧର୍ମପ୍ରାଣତା ହେତୁ ନାସ୍ତିକ ପଣ୍ଡିତ ମହାଶୟଙ୍କୁ ଆନ୍ତରିକ ଭାବରେ ଘୃଣା କରୁଥିଲେ । ଏପରି କି ତାଙ୍କୁ ଲକ୍ଷ୍ୟ କରି ଲେଖିଥିଲେ—

ହେ ପଣ୍ଡିତ ! କ୍ଷୁଦ୍ର ତବ ବୁଦ୍ଧି ମାନଦଣ୍ଡ
ବସିଅଛ ମାପିବ ହେ ଅନନ୍ତ ଅପାରେ
ଶାସ୍ତ୍ର-ତର୍କ କ୍ଷୁରଧାରେ ଖଣ୍ଡି ଣ ଅଖଣ୍ଡେ
ମାତିବ ହେ ! ଜୟୋଲ୍ଲାସେ ଗୌଣ ଅହଂକାରେ ।
ଦୂରେ ଫିଙ୍ଗି ଅଭିମାନ ପ୍ରମାଣ ପ୍ରମାଦ
ପଡ଼ ଆସି ହେ ଅନନ୍ତ ପାଦପଦ୍ମତଳେ
ହେ ଚତୁର ! ସୁଧୀ ଛାଡ଼ ବସ୍ତୁର ଚାତୁରୀ
ଭୁଞ୍ଜ ମହାନନ୍ଦେ ମହା-ବିଶ୍ୱାସମାଧୁରୀ ।

ନିଜର ଜ୍ଞାନଗୁରୁଙ୍କ ପ୍ରତି ଏ କଟୁବାକ୍ୟ ପ୍ରୟୋଗ ହୁଏ ତ କବିଙ୍କ ଦୁର୍ଦ୍ଧର୍ଷତା ମନେ କରାଯାଇପାରେ । କିନ୍ତୁ ଅନ୍ୟ ଦିଗରୁ ଦେଖିଲେ ଜଣାଯାଏ, ଭାରତୀୟ ଦର୍ଶନଶାସ୍ତ୍ରରେ କବିଙ୍କର ଯେଉଁ ପ୍ରବେଶ ଥିଲା, ଯାହାର ସୁରମ୍ୟ ଚିତ୍ରଣରେ କୁସୁମାଞ୍ଜଳିର ପ୍ରତି ଛନ୍ଦ ଆଜି ଉଦ୍ଭାସିତ, ତାହାର ମୂଳରେ ଦଣ୍ଡାୟମାନ ଥିଲେ ସେଇ ପଣ୍ଡିତପ୍ରବର । ମାତ୍ର ସତ୍ୟବାଦୀ ଓ ଧର୍ମପ୍ରାଣ ମଧୁସୂଦନଙ୍କୁ ପଣ୍ଡିତଙ୍କର ନାସ୍ତିକବାଦ ବଡ଼ ଘୃଣ୍ୟ ବୋଧ ହେଉଥିଲା । କବିଙ୍କ ମାନସିକ ଗଠନର ସ୍ୱରୂପ ଏଥିରୁ ବେଶ୍ ପ୍ରକାଶ ପାଏ ।

୬ । କଟକରେ ଅଧ୍ୟୟନ କରୁଥିବା ବେଳେ ଦର୍ଶନ ଅଧ୍ୟାପକ ହରନାଥ ଭଟ୍ଟାଚାର୍ଯ୍ୟଙ୍କ ପ୍ରେରଣାରେ କବି ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ । ସେହି ସମୟରୁ ଧର୍ମପ୍ରଚାରକରୂପେ କାର୍ଯ୍ୟ କରିବାପାଇଁ ତାଙ୍କୁ ମିଳିଥିଲା ଗୋଟାଏ ବିସ୍ତୃତ କ୍ଷେତ୍ର । ଏକ ଦିଗରେ ବ୍ରହ୍ମଚିନ୍ତନ ଓ ଅନ୍ୟ ଦିଗରେ ସରଳ ଓ ସଂଯତ ଜୀବନଯାପନ—ଏ ଦୁଇଟି ଥିଲା କବିଙ୍କ ଜୀବନ ମାନଦଣ୍ଡର

ଦୁଇ ମେରୁ ସ୍ୱରୂପ । କୁସୁମାଞ୍ଜଳିର 'ନବଯୁଗର ଅଭିଷେକ' କବିତା ଖଣ୍ଡିକ ପାଠକଲେ ବ୍ରାହ୍ମଧର୍ମ ପ୍ରତି ତାଙ୍କର ପ୍ରବଳ ଆକର୍ଷଣ ଓ ପ୍ରଗାଢ଼ ଆସ୍ଥାଥିବା ଜଣାଯାଏ । ବ୍ରାହ୍ମଧର୍ମର ବ୍ରହ୍ମୋପାସନା, ବ୍ରହ୍ମର ଉପଲବ୍ଧିରେ ଜୀବନର ଚରମ ଉତ୍କର୍ଷବିଧାନ ପ୍ରଭୃତି ବହୁ ବିଶିଷ୍ଟତତ୍ତ୍ୱ ତାଙ୍କର ବିଭିନ୍ନ କବିତାରେ ପ୍ରକାଶ ପାଇଛି । ସେସବୁ ସ୍ଥଳରେ ବ୍ରାହ୍ମଧର୍ମର ପ୍ରଭାବ ପାଶୋରିଦେବା ଉଚିତ ହେବ ନାହିଁ ।

୫ । ମଧୁସୂଦନଙ୍କ କବିତାବଳୀରେ କବିତ୍ୱର ବଳିଷ୍ଠ ବିକାଶ ସହ କମ୍ ପାଣ୍ଡିତ୍ୟ ପ୍ରକାଶ ପାଇ ନାହିଁ । ଇଂରାଜୀ, ସଂସ୍କୃତ, ବଙ୍ଗଳା ମହାରାଷ୍ଟ୍ରୀ ଓ ହିନ୍ଦୀ ସାହିତ୍ୟରେ ତାଙ୍କର ନ୍ୟୂନାଧିକ ପରିମାଣରେ ବ୍ୟୁତ୍ପତ୍ତି ଥିଲା । ଶେଲି, ଓ୍ୱାର୍ଡସ୍‌ଓ୍ୱାର୍ଥ ପ୍ରମୁଖ ଇଂରାଜୀ କବି; ସଂସ୍କୃତ, ପଞ୍ଚକାବ୍ୟ, ରାମାୟଣ, ବଙ୍ଗ-ସାହିତ୍ୟରେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, ମାଇକେଲ ମଧୁ-ସୂଦନ ଦତ୍ତ, ରବୀନ୍ଦ୍ରନାଥ ଠାକୁରଙ୍କର କବିତା, ହିନ୍ଦୀରେ ତୁଳସୀଦାସଙ୍କ ରାମାୟଣ, ମହାରାଷ୍ଟ୍ରୀ ସାହିତ୍ୟରେ ତୁକାରାମଙ୍କ ଭଜନାବଳୀ ପ୍ରଭୃତି ସେ ଆଲୋଚନା କରିଥିଲେ । ପ୍ରାଚୀନ ଉତ୍କଳ ସାହିତ୍ୟରେ ମଧ୍ୟ ତାଙ୍କର ସମ୍ୟକ୍ ଚର୍ଚ୍ଚା ଥିଲା । ଶାରଳାଙ୍କ ମହାଭାରତଠାରୁ ଆରମ୍ଭ କରି ରାଧାନାଥଙ୍କ ପର୍ଯ୍ୟନ୍ତ ସମସ୍ତ ଶ୍ରେଷ୍ଠ କବିଙ୍କ ଉତ୍କୃଷ୍ଟ କାବ୍ୟମାନ ସେ ପଢ଼ିଥିଲେ । କୁସୁମାଞ୍ଜଳି ପାଠ କଲାବେଳେ ପାଶ୍ଚାତ୍ୟ କବିମାନଙ୍କ ଶୈଳୀ, ସଂସ୍କୃତ ଦର୍ଶନଶାସ୍ତ୍ରର ସାର ସଂଗ୍ରହ, ବଙ୍ଗୀୟ କବିମାନଙ୍କର ଆନନ୍ଦବାଦ ଓ କେତେକ ପରିମାଣରେ ଉତ୍କଳ ସାହିତ୍ୟର ଚିତ୍ରସମ୍ପଦ ରାଗରାଗିଣୀ ପ୍ରୟୋଗ ପ୍ରତି ମଧ୍ୟ ଦୃଷ୍ଟି ଦେବାକୁ ହେବ ।

୫ । ରାଧାନାଥଙ୍କ ଅଭ୍ୟୁଦୟ ବେଳେ ଉତ୍କଳରେ ବଙ୍ଗୀୟମାନେ ଅସାଧାରଣ ଆଧିପତ୍ୟ ବିସ୍ତାର କରିଥିଲେ । ଟଏନବି ସାହେବଙ୍କ ଐତିହାସିକ ବିବରଣୀରୁ ଜଣାଯାଏ, ଉତ୍କଳର ଆର୍ଥିକ ଅଧୋଗତିର ମୂଳରେ ବଙ୍ଗୀୟ ଷଡ଼ଯନ୍ତ୍ର କମ୍ ବିଷାକ୍ତ ଜଳସେଚନ କରି ନ ଥିଲା । ବଙ୍ଗୀୟମାନେ ଇଂରେଜ ଶାସନରେ ଉଚ୍ଚପଦବୀ ଅଧିକାର କରି ଓଡ଼ିଆ ଭାଷା ଲୋପ କରିବାପାଇଁ ମଧ୍ୟ ପ୍ରବଳ ଚେଷ୍ଟା କରିଥିଲେ । ଓଡ଼ିଶାରେ ଓଡ଼ିଆ ପାଠ୍ୟପୁସ୍ତକ ନ ଥିବା ଅଭିଯୋଗ କରି ସେମାନେ ବଙ୍ଗ ଭାଷା ପ୍ରଚଳନ କରାଇବାର ପ୍ରବଳ ଉଦ୍ୟମ କରୁଥିଲେ । ସେଥିପାଇଁ ମଧୁସୂଦନ କେବଳ ପାଠ୍ୟପୁସ୍ତକ ଲେଖିବାରେ ପ୍ରବୃତ୍ତ ହୋଇ ନ ଥିଲେ, ହୋଇଥିଲେ ଉତ୍କଳରେ ଜାତୀୟ ଜାଗରଣ ଆଣିବା ପାଇଁ ।

୬ । ମଧୁସୂଦନଙ୍କ ଜୀବନର ଆରମ୍ଭ ଶିକ୍ଷକତାରେ ଏବଂ କର୍ମମୟ ଜୀବନ ସାଙ୍ଗ ହୋଇଥିଲା ଶିକ୍ଷା ବିଭାଗରେ । ଶିକ୍ଷକ ସୁଲଭ ସରଳତା, ଶାନ୍ତ ପ୍ରିୟତା, ଉପଦେଶକତା ଓ ନିଷ୍ଠା ତାଙ୍କ-ଠାରେ ପୂରମାତ୍ରାରେ ଥିଲା । ଇନ୍‌ସ୍‌ପେକ୍‌ଟର ଥିବା ବେଳେ ଉତ୍କଳର ପୂରପଲ୍ଲୀ ତାଙ୍କ ଦେଶ ବେଶ୍ ପରିଚିତ ହୋଇଥିଲେ । ପଙ୍କ୍ତିର—

କାହିଁ ଲଉଡ଼ ଧରି ଗୋଏ ଗୋ ବାଛୁରୀ
ଗଉଡ଼ ମୂରୁଲୀ ବଜାଇ
କାହିଁ ଧାନ ଅମଳ କରଇ କୃଷୀ ବଳ
ଖଳାରେ ଦେଉଗଲା ପକାଇ

କାହିଁବା ଚଣ୍ଡ କାନନରେ
ଭୀଷଣ ଶାର୍ଦ୍ଦୂଳ ରବରେ
କାହିଁ ଭୀମ ଶ୍ମଶାନେ ଗୃଧ୍ର ଶୃଗାଳ ସ୍ୱାନେ
ବୁଲନ୍ତି ବିକଟ ନାଦରେ ।

ଏ ସବୁ ଶବ୍ଦ କବିଙ୍କ ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ଓ ପଲ୍ଲୀ-ପରିଚୟର ସ୍ପଷ୍ଟ ସୂଚନା ଦିଏ । ତାଙ୍କ ପକ୍ଷରେ ଶିକ୍ଷକ ଜୀବନ ଗୋଟିଏ ପବିତ୍ର ଆଦର୍ଶ ଜୀବନ । ତାଙ୍କ ଗ୍ରନ୍ଥାବଳୀରେ ନୀତିମୂଳକ ଓ ଉପଦେଶାତ୍ମକ ଯେଉଁ ସମସ୍ତ କବିତା ଦେଖାଯାଏ ସେ ଗୁଡିକ ଉପରେ ଶିକ୍ଷକତାର ପ୍ରଭାବ ଓତପ୍ରୋତ ଭାବେ ବିଜଡ଼ିତ— ଏକଥା ସହଜରେ ଅସ୍ୱୀକାର କରାଯାଇ ନପାରେ ।

୭ । କବି ମଧୁସୂଦନଙ୍କ ପ୍ରତିଭା ଓ ସୃଷ୍ଟି ବହୁମୁଖୀ । ତାଙ୍କ ଅଧ୍ୟୟନର କ୍ଷେତ୍ର ସୁବିସ୍ତୃତ, ତାଙ୍କ ଭାବନାର ପରିସର ଅତ୍ୟନ୍ତ ବିଶାଳ । ସେଥିପାଇଁ ଅନୁବାଦ, ଗଳ୍ପ, ଭାବାତ୍ମକ କବିତା, ବର୍ଣ୍ଣନାତ୍ମକ କବିତା, ଶିଶୁ ଗୀତିକା, ଦାର୍ଶନିକ କବିତା, ରଙ୍ଗ ରହସ୍ୟ ପୂର୍ଣ୍ଣ କବିତା, ପାଠ୍ୟ ପୁସ୍ତକ ଓ ଶିଶୁ ସାହିତ୍ୟ ସୃଷ୍ଟି, ଏସବୁ ତାଙ୍କ ତରଳ ଲେଖନୀରୁ ନିଃସୃତ ହୋଇଥିଲା । ଅନ୍ୟ କବିମାନଙ୍କ ଆଲୋଚନା ବେଳେ ଯେପରି ସେମାନଙ୍କ ଜୀବନୀର ପ୍ରତିବିମ୍ବ ସେମାନଙ୍କର କାବ୍ୟ କବିତାରେ ଅନୁସଂଧେୟ, କବି ମଧୁସୂଦନଙ୍କ ସମ୍ବନ୍ଧେ ମଧ୍ୟ ଠିକ୍ ସେଇ କଥା । ତାଙ୍କ ପ୍ରତିଭା ବହୁମୁଖୀ ହେଲେହେଁ ଧର୍ମ ପ୍ରାଣତା ଓ ଗଭୀର ଭକ୍ତିମତ୍ତା ହେତୁ ଉତ୍କଳରେ ସେ 'ଭକ୍ତକବି' ନାମରେ ସମ୍ମାନିତ ।

# ଉତ୍କଳ ସାହିତ୍ୟରେ କୁସୁମାଞ୍ଜଳିର ସ୍ଥାନ

କବି ମଧୁସୂଦନ ଉତ୍କଳ ସାହିତ୍ୟରେ ସମ୍ପୂର୍ଣ୍ଣ ଆସନରେ ଉପବିଷ୍ଟ । ରାଧାନାଥଙ୍କ ପୂର୍ବରୁ ଉତ୍କଳ ସାହିତ୍ୟ ମୁଖ୍ୟତଃ ପୁରାଣ, ରାଧାକୃଷ୍ଣ ତଥା ରାଜାରାଣୀଙ୍କ ପ୍ରେମ ସମ୍ବଳିତ କାବ୍ୟ କବିତାରେ ପୂର୍ଣ୍ଣଥିଲା । ବିଶେଷତଃ ଉପେନ୍ଦ୍ର ଭଞ୍ଜ ଉତ୍କଳ ସାହିତ୍ୟରେ ଯେଉଁ ଯୁଗାନ୍ତକାରୀ ପରିବର୍ତ୍ତନ ଘଟାଇଲେ, ତାହା ଫଳରେ କାବ୍ୟରେ ନିମ୍ନଲିଖିତ ବିଷୟମାନ ପ୍ରାଧାନ୍ୟ ଲାଭ କଲା:—ଭାଷାର ଜଟିଳତା, ଶବ୍ଦ ବିନ୍ୟାସରେ ପାଣ୍ଡିତ୍ୟ, ପ୍ରେମବର୍ଣ୍ଣନାର ଆତିଶଯ୍ୟ, ନାନା ସାଙ୍ଗୀତିକ ରାଗରାଗିଣୀ, କାବ୍ୟଗତ ବିଷୟର କାଳ୍ପନିକତା, କବିତାରେ ଅଳଙ୍କାର ପ୍ରୟୋଗର ପ୍ରାଚୁର୍ଯ୍ୟ ଓ କାବ୍ୟ କବିତାରେ ବର୍ଣ୍ଣନା ରୀତିଉପରେ ସଂସ୍କୃତ ସାହିତ୍ୟର ପ୍ରଭାବ । ରାଧାନାଥ ଯୁଗରେ ଏ ଗୁଡିକର ଅଖଣ୍ଡତା ଓ ଧାରାବାହିକତା ସଂରକ୍ଷିତ ହୋଇ ପାରିଲା ନାହିଁ । ତେଣୁ ଭଞ୍ଜଯୁଗ ଦୃଷ୍ଟିରୁ ବିଚାର କରି ଉତ୍କଳ ସାହିତ୍ୟରେ କୁସୁମାଞ୍ଜଳିର ସ୍ଥାନ ନିର୍ଦ୍ଦେଶ କରିବା ସଙ୍ଗତ ହେବ ନାହିଁ । ରାଧାନାଥ ଯୁଗର ପ୍ରାରମ୍ଭରେ ଦେଶର ରାଜନୈତିକ ଅବସ୍ଥା ଓ ଶିକ୍ଷା ପ୍ରଣାଳୀର ପରିବର୍ତ୍ତନ, ବଙ୍ଗୀୟମାନଙ୍କର ଉତ୍କଳ ଉପରେ ଅତ୍ୟଧିକ ପ୍ରଭାବ ଓ ଓଡ଼ିଆ ଭାଷାର ବିଲୋପ ସାଧନ ନିମନ୍ତେ ଉଦ୍ୟମ, କବି ତଥା ଶିକ୍ଷିତଙ୍କ ଉପରେ କେବଳ ସଂସ୍କୃତ ନୁହେଁ, ଇଂରାଜୀ, ତଥା ବଙ୍ଗଳା ସାହିତ୍ୟର ପ୍ରଭାବ, ରାଜନୈତିକ ଚେତନା ଓ ଦେଶାତ୍ମବୋଧମୂଳକ ଆନ୍ଦୋଳନ, ବିଭିନ୍ନ ପତ୍ରପତ୍ରିକାର ପ୍ରକାଶ, ପାଠ୍ୟପୁସ୍ତକ ପ୍ରଣୟନର ଆବଶ୍ୟକତା, ଏ ସମସ୍ତ ଓ ଏପରି ଅନ୍ୟ ଅନେକ କାରଣରୁ ସାହିତ୍ୟିକ ଚିନ୍ତାଧାରା ଭିନ୍ନ ଦିଗରେ ପ୍ରବାହିତ ହେବାକୁ

ଲାଗିଲା । ରାଧାନାଥ ଓ ତାଙ୍କର ସମସାମୟିକ ଗ୍ରାମଙ୍କର- ମଧୁସୂଦନ, ଫକୀରମୋହନ, ଗଙ୍ଗାଧର ପ୍ରମୁଖ କବିମାନେ ପରିବର୍ତ୍ତିତ ଯୁଗର ଆବଶ୍ୟକତା ଅନୁଯାୟୀ ନୂତନ ଧରଣର କାବ୍ୟ, ନାଟକ, କବିତା, ଉପନ୍ୟାସ ପ୍ରଭୃତି ଲେଖି ନବୀନ ଆଲୋକରେ ଦେଶକୁ ଆଲୋକିତ କଲେ । ଭାଷାଗତ ପାଣ୍ଡିତ୍ୟ ଓ ଶବ୍ଦାଡ଼ମ୍ବର ଏବଂ ଗ୍ରାମ୍ୟ ଗ୍ରନ୍ଥ ପ୍ରସିଦ୍ଧ ରାଗରାଗିଣୀର ପରିବର୍ତ୍ତନ ତଥା ଗଦ୍ୟ ସାହିତ୍ୟର ସୃଷ୍ଟି, ନବୀନ ଭାବଧାରାର ନୂତନ ଶୈଳୀରେ ଅଭିବ୍ୟକ୍ତି ଓ ଜାତୀୟ ଭାବର ପ୍ରକଟନ ଦ୍ୱାରା ରାଧାନାଥ ଯୁଗ ଉତ୍କଳ ସାହିତ୍ୟର ପୁଷ୍ଟି ବିଧାନ କରି କମ୍ ଧନ୍ୟବାଦାର୍ହ ହୋଇ ନାହିଁ । ଅତୀତ ଉପରେ ଦୃଷ୍ଟି ନ ଦେଇ ଭବିଷ୍ୟତର ଗତିପଥ ନିର୍ଣ୍ଣୟ କରିବା ଯେଉଁପରି ବୁଦ୍ଧିମତ୍ତାର କାର୍ଯ୍ୟ ନୁହେଁ, ଉତ୍କଳର ସାହିତ୍ୟିକ ଧାରା ଆଲୋଚନା ନକରି ମଧୁସୂଦନଙ୍କ ସ୍ଥାନ ନିର୍ଦ୍ଦେଶ କରିବା ସେହିପରି ସମାଲୋଚକର କାର୍ଯ୍ୟ ହେବ ନାହିଁ । ମଧୁସୂଦନ ରାଧାନାଥ ଯୁଗର ଜଣେ ପ୍ରଧାନ କବି କେବଳ ନୁହନ୍ତି, ରାଧାନାଥଙ୍କ ପ୍ରିୟ ଶିଷ୍ୟ ଓ ଆଜୀବନ ବନ୍ଧୁ ହୋଇଥିଲେ ହେଁ ଉଭୟଙ୍କର ଚିନ୍ତାଧାରା ଓ ସାହିତ୍ୟ ସେବାର ସରଣୀ ସମାନ ନୁହେ ରାଧାନାଥ କାବ୍ୟ ପ୍ରଣେତାରୂପେ ଯେପରି ପଦ୍ମଶତ ଗୀତି କବିତାର ଲେଖକରୂପେ ମଧୁସୂଦନ ସେହିପରି ଉତ୍କଳର ଶତସହସ୍ର ପାଠକଙ୍କୁ ବିଦିତ ।

ସାହିତ୍ୟିକ ଓ କବି ରୂପେ ମଧୁସୂଦନଙ୍କୁ ବିଚାର କଲେ ଜଣାଯିବ, ଉତ୍କଳ ସାହିତ୍ୟରେ ସେ ଏକ ନବୀନ ଯୁଗର ସ୍ରଷ୍ଟା । ରାଧାନାଥ ପ୍ରେମ ଫଳିତ କାବ୍ୟ ରଚନାରେ ସୁଦକ୍ଷ ଥିଲେ । ଯେଉଁଠାରେ ଯାହା ଦେଖୁଥିଲେ ଏବଂ ଶାସ୍ତ୍ରରେ ଯାହା ଶୁଣି

ହୋଇଥିଲା, ତାହା ସେ ନିଃସଙ୍କୋଚରେ ଭାଷା ତୂଳିକାରେ ଅଙ୍କନ କରୁଥିଲେ । ନନ୍ଦକେଶ୍ୱରୀଙ୍କର ସେ ଯେଉଁ ଚିତ୍ର ଦେଇଛନ୍ତି ତାହା ଓଡ଼ିଆ ଜାତିର ଗ୍ଲାନିକର ହେଲେହେଁ "ନିରଙ୍କୁଶା ହି କବୟଃ" ନୀତି ଅନୁସାରେ ତାହା ଅନାଲୋଚ୍ୟ । କିନ୍ତୁ "କୋଣାର୍କେ" ପ୍ରଣେତା ଏଥିଲାଗି ରାଧାନାଥଙ୍କ ମୃଣାବଲୋକନ କରିବାକୁ କୁଣ୍ଠାବୋଧ କରିଛନ୍ତି —

କବିଙ୍କି ସ୍ୱମର ବିଭିଗେ ମୃଣୀ ପେଟିଏ ପଛେ ।

ଏଥିରୁ ଏହା ସ୍ପଷ୍ଟ ରାଧାନାଥ ପାଙ୍କ୍ତିରେ ଏକାନ୍ତ ଅସ୍ପୃହଣୀୟ ଭାବର ବର୍ଣ୍ଣନା କରିବାକୁ ପଶ୍ଚାତ୍ପଦ ହୋଇ ନାହାନ୍ତି । କିନ୍ତୁ ମଧୁସୂଦନଙ୍କ କବିତାବଳୀରେ ଏ ରୁଚିର ପ୍ରକାଶ ଠାଏ ସୁଦ୍ଧା ଦେଖା ଯାଏ ନାହିଁ । ରାଧାନାଥ ଭାଷାପଣ୍ଡିତ ଓ ବର୍ଣ୍ଣନା ଶୈଳୀରେ ମଧୁସୂଦନଙ୍କ ତୁଳନାରେ ମହତ୍ତର । କିନ୍ତୁ ଗୀତି କବିତା ରଚନାରେ, ଉନ୍ନତ ଓ ମାର୍ଜିତ ରୁଚିର ପ୍ରକଟନରେ ଆଦର୍ଶବାଦର ପ୍ରତିଷ୍ଠା ଓ ପ୍ରଚାରରେ ରାଧାନାଥ ମଧୁସୂଦନଙ୍କ ସମକକ୍ଷ ହୋଇ ପାରିବେ ନାହିଁ । ରାଧାନାଥ ସଂସାରକୁ ଦାରୁଣ ମନେକରି ବିଷାଦ ଓ ନୈରାଶ୍ୟବାଦର ପ୍ରଚାର କରିଛନ୍ତି । ମଧୁସୂଦନ ଅନ୍ୟ ପକ୍ଷରେ ବଳିଷ୍ଠ ଆନନ୍ଦବାଦ, ଅଧ୍ୟାତ୍ମବାଦ, ଆଶା ଓ ବିଶ୍ୱାସବାଦ ଦୃଢ଼ ଭାବରେ ପ୍ରତିଷ୍ଠା କରିଛନ୍ତି । ମଧୁସୂଦନଙ୍କ ସଂସାର ମଧୁମୟ, ରାଧାନାଥଙ୍କର ଦୁଃଖମୟ । ଉଭୟେ ପରଂପରାର ପୂର୍ଣ୍ଣ ରକ୍ଷକ ନଥିଲେ ହେଁ ଛନ୍ଦୋଦୃଷ୍ଟିରୁ ମଧୁସୂଦନ ଅଧିକ ଭାବରେ ପରଂପରା ରକ୍ଷା କରିଛନ୍ତି । ଭକ୍ତିର ମଧୁର ସ୍ପନ୍ଦନରେ ମଧୁସୂଦନ—ଗ୍ରନ୍ଥାବଳୀ ଉଜ୍ଜ୍ୱଳ । ଭାଷାର ବଳିଷ୍ଠ ପ୍ରକାଶ, ପ୍ରେମର ମଧୁର ଚିତ୍ରଣ ଓ ରସିକତାର କୋମଳ ଅଭିବ୍ୟକ୍ତିରେ ରାଧାନାଥ ଗ୍ରନ୍ଥାବଳୀ ସ୍ୱାଦ୍ୟ,

ହୃଦ୍ୟ ହୋଇଛନ୍ତି । ଉଭୟେ ଜାତୀୟତା ଓ ମହାଜାତୀୟତା ଏକା ଧାରରେ ପ୍ରଚାର କରିଛନ୍ତି । ରାଧାନାଥ ଯୁଗ ତଥା ପ୍ରାଚୀନ ଯୁଗମାନଙ୍କ ଦୃଷ୍ଟିରୁ ମଧ୍ୟ କୁସୁମାଞ୍ଜଳିର ଆସନ ଉଚ୍ଚରେ ନିର୍ଦ୍ଦେଶ କରାଯାଇ ପାରିବ ।

---

## କୁସୁମାଞ୍ଜଳିର

## ପ୍ରତ୍ୟେକ କବିତାର ସାର କଥା

କୁସୁମାଞ୍ଜଳିଃ—ଭକ୍ତ କବିଙ୍କ ପ୍ରଦତ୍ତ ଏଇ ନାମଟି ବଡ଼ ଅର୍ଥପୂର୍ଣ୍ଣ ମନେହୁଏ । ବାସ୍ତବିକ୍ ଏଇ ଗ୍ରନ୍ଥରେ ପାଠକମାନଙ୍କୁ କବି ଦେଇଛନ୍ତି ଅର୍ଥ ସୌରଭପୂର୍ଣ୍ଣ କବିତା କୁସୁମର ଅଞ୍ଜଳି । ମଧୁସୂଦନ ଗ୍ରନ୍ଥାବଳୀରେ ଏଇ ଗ୍ରନ୍ଥଟିର ସ୍ଥାନ ସର୍ବୋଚ୍ଚ କହିଲେ ଅତ୍ୟୁକ୍ତି ହେବନାହିଁ । ବ୍ୟଙ୍ଗକବିତାଠାରୁ ଆରମ୍ଭକରି ଉଚ୍ଚଦରର ସଙ୍ଗୀତ ପର୍ଯ୍ୟନ୍ତ, କୋମଳମତି ଶିଶୁମାନଙ୍କର ଆନନ୍ଦକର ବର୍ଣ୍ଣନାତ୍ମକ କବିତାଠାରୁ ସାହିତ୍ୟିକ ମାନଙ୍କର ଉପଭୋଗ ଶକ୍ତି-ମୂଳକ ମଧୁର କବିତା ପର୍ଯ୍ୟନ୍ତ, ନୀତି ଓ ଧର୍ମତତ୍ତ୍ୱ ଗର୍ଭକ ରଚନାଠାରୁ ଦେଶ ଓ ରାଜଭକ୍ତି ସମ୍ବଳିତ କବିତା ପର୍ଯ୍ୟନ୍ତ ସେ ଲେଖିଯାଇଛନ୍ତି । କୁସୁମାଞ୍ଜଳିରେ ତାଙ୍କର ପ୍ରକୃତି ଚିତ୍ରଣରେ ଦୃଷ୍ଟିକୋଣର ସ୍ୱାତନ୍ତ୍ର୍ୟ, ଅଧ୍ୟାତ୍ମବାଦ, ଆନନ୍ଦବାଦ, ଆଶା ଓ ବିଶ୍ୱାସ ବାଦ, ବ୍ରାହ୍ମଧର୍ମ ପ୍ରେମିକତା, ମହାଜାତୀୟତା, ରାଜଭକ୍ତି ଓ ସାହିତ୍ୟିକତା ଏକାଧାରରେ ପ୍ରକାଶ ପାଇଛି । କବିଙ୍କ ବଳିଷ୍ଠ ବ୍ୟକ୍ତିତ୍ୱର ବିଭିନ୍ନ ବିଭାବ ଏଥିରେ ପ୍ରକାଶ ପାଇଛି । ତଳେ କ୍ରମାନ୍ୱୟରେ ପ୍ରତ୍ୟେକ କବିତାର ଅତି ସଂକ୍ଷିପ୍ତ ଆଲୋଚନା ସହ ସାରକଥା ପ୍ରଦତ୍ତ ହୋଇଛି ।

## ନବବସନ୍ତ ଭାବନା

ଏହା ଚାରିଖଣ୍ଡରେ ବିଭକ୍ତ । ପ୍ରଥମଖଣ୍ଡରେ ବସନ୍ତର ମୋହନ ମାଧୁରୀ ବର୍ଣ୍ଣିତ । ଏଥିରେ ବସନ୍ତ ଋତୁର ବିଭିନ୍ନ ବିଶିଷ୍ଟତା ଫୁଟାଇ ବିଶ୍ୱବ୍ରହ୍ମାଣ୍ଡରେ ଆନନ୍ଦର ଅଖଣ୍ଡ ପ୍ରବାହ କିପରି ଚାଲିଛି, କବି ଦର୍ଶାଇଛନ୍ତି । ଦ୍ୱିତୀୟ ଖଣ୍ଡରେ ନିଜକୁ ସମ୍ବୋଧନ କରି ଚିନ୍ତାରାଜ୍ୟରୁ ସେ ବସ୍ତୁ ରାଜ୍ୟକୁ ଅବତରଣ କରିଅଛନ୍ତି । ସାଂସାରିକ ମାୟା ମୋହରେ ଜୀବନ କିପରି ବ୍ୟର୍ଥ ହୋଇ ଯାଇଛି ଓ କର୍ମଭୂମି ପୃଥିବୀରେ କିପରି ସେ ନିଷ୍କ୍ରିୟ ହୋଇ ଯାଇଛନ୍ତି ତାହା ଉଲ୍ଲେଖ କରିଛନ୍ତି । ତୃତୀୟ ଖଣ୍ଡରେ ବର୍ଣ୍ଣନା କରା ଯାଇଛି ଯେ ଗଭୀର ଚିନ୍ତା ଫଳରେ ଅଜ୍ଞାନ ଅନ୍ଧକାର କବିଙ୍କ ମନୋରାଜ୍ୟରୁ ଦୂରୀଭୂତ ହୋଇ ପ୍ରକୃତ ଜ୍ଞାନାଲୋକର ଉଦୟ ହୋଇଛି । ତାପରେ ଆକାଶବାଣୀ ତାଙ୍କର ଶ୍ରୁତି ଗୋଚର ହୋଇଛି । ଶେଷ ଖଣ୍ଡରେ ଆକାଶବାଣୀ ବର୍ଣ୍ଣିତ । ତହିଁରେ ଏହି ଉପଦେଶ ଦିଆଯାଇଛି ଯେ, ମାୟା ବନ୍ଧନରେ ମନୁଷ୍ୟ ପ୍ରେୟ ପଥ ଆଶ୍ରୟ କରି ସାଂସାରିକ ଓ ଭୌତିକ ଉନ୍ନତି ଖୋଜିବୁଲେ । କିନ୍ତୁ ଜୀବନର ଚରମ ଉନ୍ନତି ଲାଗି ଶ୍ରେୟ ପଥ ଆଶ୍ରୟ କରିବା ଉଚିତ । ଫଳରେ, ଆଧ୍ୟାତ୍ମିକ ଉନ୍ନତି ମଧ୍ୟ ଘଟିବ । ପାପ-ପ୍ରଲୋଭନ ଜୟ କଲେ ମନୁଷ୍ୟର ଚିତ୍ତ ଶୁଦ୍ଧ ହେବ ଏବଂ ଜ୍ଞାନଭକ୍ତି ଓ କର୍ମ ସମସ୍ତ ଦିଗରେ ତାହାର ଚିତ୍ତ ପ୍ରସାରିତ ହେବ ।

ଆଲୋଚନା—ଏଥିରେ ବସନ୍ତ ବର୍ଣ୍ଣନା କରାଯାଇଛି ମାତ୍ର ଛନ୍ଦମାଳାର ବସନ୍ତ ବର୍ଣ୍ଣନା ଠାରୁ ଏହା ଭିନ୍ନ । ଏହାର ମଧ୍ୟଦେଇ କବିଙ୍କ ବିଶିଷ୍ଟ ଆନନ୍ଦବାଦ ମଧ୍ୟ ପ୍ରକାଶ ପାଇଛି । କବି ବ୍ରାହ୍ମଧର୍ମାବଲମ୍ବୀ । ବ୍ରାହ୍ମମାନେ ବ୍ରହ୍ମର ଉପାସକ ।

ହିନ୍ଦୁମାନଙ୍କର ପରମାରାଧ୍ୟ ଉପନିଷଦରେ ଯେଉଁ ବ୍ରହ୍ମତତ୍ତ୍ୱ ପ୍ରତିପାଦିତ ହୋଇଛି, ତାହା ବ୍ରାହ୍ମଜଗତର ଶ୍ରେଷ୍ଠ ତତ୍ତ୍ୱ । କବି ବ୍ରାହ୍ମଧର୍ମ ଗ୍ରହଣ କରିଥିବାରୁ ଏବଂ ଉପନିଷଦ୍ ଚର୍ଚ୍ଚାର ପ୍ରଭାବରେ ସାଂସାରିକ ପଥ ତ୍ୟାଗ କରି ଓ ମାୟାଜାଲ ଛିନ୍ନ କରି ଅଧ୍ୟାତ୍ମ ମାର୍ଗରେ ଅଗ୍ରସର ହେବାକୁ ନିର୍ଦ୍ଦେଶ ଦେଇଛନ୍ତି । ଏଥିରେ ସେ ନିଜ କଥା ଲେଖିଥିଲେହେଁ ଏହା ବିଶ୍ୱମାନବର କଥା । ମାୟାମୋହଗ୍ରସ୍ତ ଯେ କୌଣସି ଲୋକ ଗମ୍ଭୀର ଚିନ୍ତା କଲେ ଜୀବନର ଚରମ ଉନ୍ନତି ଲାଭ କରି ପାରିବେ । ଏଥିରେ ଯେଉଁ ପ୍ରେୟ ଓ ଶ୍ରେୟ ପଥର ଉଲ୍ଲେଖ ଅଛି, ତାହା ବିଶ୍ୱବିଖ୍ୟାତ କଠୋପନିଷଦ୍‌ର ଦ୍ୱିତୀୟ ବଲ୍ଲୀର ଦ୍ୱିତୀୟ ମନ୍ତ୍ରର ଅନୁରୂପଃ—
ଶ୍ରେୟଶ୍ଚ ପ୍ରେୟଶ୍ଚ ମନୁଷ୍ୟମେତୌ ସମ୍ପରୀତ୍ୟ ବିବିନକ୍ତି ଧୀରଃ ।
ଶ୍ରେୟୋହି ଧୀରୋଭି ପ୍ରେୟସୋ ବୃଣୀତେ ପ୍ରେୟୋମନ୍ଦୋ ଯୋଗକ୍ଷେମାତ୍ ବୃଣୀତେ" ।

କବିଙ୍କର ବଳିଷ୍ଠ ଆଶା ଓ ଅଧ୍ୟାତ୍ମବାଦ ମଧ୍ୟ ଏଠାରେ ପ୍ରକାଶ ପାଇଛି ।

---

## ଏ ସୃଷ୍ଟି ଅମୃତମୟ ହେ

ଏହା ଏଗାର ଖଣ୍ଡରେ ବିଭକ୍ତ । ପ୍ରଥମ ଖଣ୍ଡରେ କବି ବିଶ୍ୱବାସୀଙ୍କୁ ସମ୍ବୋଧନ କରି ଅମୃତମୟ ସୃଷ୍ଟିକୁ ଉପଭୋଗ କରିବାଲାଗି ଉଦ୍‌ବୋଧନ ଦେଇଛନ୍ତି । ଦ୍ୱିତୀୟ ଖଣ୍ଡଠାରୁ ଆରମ୍ଭ କରି ଶେଷ ଖଣ୍ଡର ମଧ୍ୟଭାଗ ପର୍ଯ୍ୟନ୍ତ ସଂସାରର ନାନା ପ୍ରାକୃତିକ ଦୃଶ୍ୟ ତଥା ଅନ୍ୟାନ୍ୟ ବସ୍ତୁ ବିଷୟ ଉଲ୍ଲେଖ କରି ସେ କହିଛନ୍ତି ଯେ ସେ ସମସ୍ତ ମଧ୍ୟରେ ଈଶ୍ୱରଙ୍କ ସତ୍ତା ବିଦ୍ୟମାନ । ତେଣୁ

ସଂସାରରେ ଆନନ୍ଦାମୃତ ପାନ କରିବାପାଇଁ ବିଶ୍ୱବାସୀଙ୍କୁ ତାଙ୍କର ନିବେଦନ । କବିଙ୍କର ଆନନ୍ଦବାଦର ଏହି କବିତାଟି ହେଉଛି ଶ୍ରେଷ୍ଠ ପ୍ରତୀକ । ରାଧାନାଥଙ୍କ ବିଷାଦବାଦ ଏହାର ପ୍ରତିଯୋଗୀ ରୂପେ ଏଠାରେ ମନେପଡ଼େ । ଦୁଃଖଗୁରୁଙ୍କ ପଟ୍ଟଶିଷ୍ୟ ରାଧାନାଥ ନାନା ଦୁଃଖ ନିର୍ଯ୍ୟାତନା ଅନୁଭବ କରି ଶଙ୍କାରେ ଯେପରି କହିଛନ୍ତି, "ବାହୁଡ଼ିବି ଏବେ ଦାରୁଣ ସଂସାରେ", ମଧୁସୂଦନ ଅନ୍ୟପକ୍ଷରେ ସଂସାରରେ ଦେଖିଛନ୍ତି, ସେହି ବିଷାଦ ପରିବର୍ତ୍ତେ ଆନନ୍ଦବିମଳ ଓ ବିଶ୍ୱବ୍ୟାପକ ଆନନ୍ଦ ଏବଂ ବିଶ୍ୱବାସୀଙ୍କୁ କହିଛନ୍ତି, 'ପିଅ ସେ ଅମୃତ ପଯ୍ଯ ହେ'' ।

## ନବଯୁଗ ଅଭିଷେକ

ଏହା ତିନି ଖଣ୍ଡରେ ବିଭକ୍ତ । ପ୍ରଥମ ଖଣ୍ଡରେ ବ୍ରାହ୍ମମୁହୂର୍ତ୍ତି ସଙ୍ଗେ ବ୍ରାହ୍ମଧର୍ମର ତୁଳନା କରାଯାଇଛି । ଦ୍ୱିତୀୟ ଖଣ୍ଡରେ ନବଯୁଗରୂପକ ଯୁବରାଜଙ୍କର ଅଭିଷେକୋତ୍ସବ ମହା-ସମାରୋହରେ ଅନୁଷ୍ଠିତ ହେବାର ବର୍ଣ୍ଣନା ଉପଭୋଗ୍ୟ । ତୃତୀୟ ଖଣ୍ଡରେ ଅଭିଷିକ୍ତ ନବଯୁଗରୂପକ ସମ୍ରାଟଙ୍କୁ ଦେବତାମାନଙ୍କର ଆଶୀର୍ବାଦ ବର୍ଣ୍ଣିତ । ପୁଣି ବ୍ରାହ୍ମଧର୍ମର ଯାହା ମୂଳ ମନ୍ତ୍ର, ତାହା ସେହି ଅଭିଷେକୋତ୍ସବ କାଳରେ କବିମାନଙ୍କର ଅଭିନନ୍ଦନ ଗୀତିକା ଛଳରେ ଶ୍ରବଣ କରି ଯାଇଛି ।

ଆଲୋଚନା: ରାଜାଙ୍କର ଅଭିଷେକ ସଙ୍ଗେ ନବଯୁଗର ଯେଉଁ ତୁଳନାତ୍ମକ ବର୍ଣ୍ଣନା କରିଛନ୍ତି, ତହିଁରେ ତାଙ୍କର ବ୍ରାହ୍ମଧର୍ମରେ ପ୍ରଗାଢ଼ ଆସ୍ଥା ଓ ସାମ୍ୟ ମୈତ୍ରୀର ବାର୍ତ୍ତା ପ୍ରଚୁର ପ୍ରତିଫଳିତ ।

## ଧରଣୀ ପ୍ରତି ସମୁଦ୍ରର ଉକ୍ତି

ପୃଥିବୀ ଓ ସମୁଦ୍ର ମଧ୍ୟରେ ଥିବା ସଂପର୍କ ଏଥିରେ ବର୍ଣ୍ଣିତ । ପୁଣି ପୃଥିବୀର ମୂଳ ଜଳ ( ଅପ୍ ) ତାହାର ମୂଳ ତେଜ (କବିତାରେ ସୂର୍ଯ୍ୟ ଚନ୍ଦ୍ର ଦ୍ୱାରା ସୂଚିତ) ଓ ତାହାର ମୂଳ ( ପିଅର ) ଆକାଶ ( ବ୍ୟୋମ) – ଏହି ଦାର୍ଶନିକ ତତ୍ତ୍ୱ ପ୍ରକାରାନ୍ତରେ ଫୁଟି ଉଠିଛି । ଧରାପୃଷ୍ଠରେ ବାସ କରିବାକୁ ହେଲେ ସିନ୍ଧୁ ଓ ସୂର୍ଯ୍ୟ ପ୍ରଭୃତି ଗ୍ରହମାନଙ୍କର ସହାୟତା ଏକାନ୍ତ ଆବଶ୍ୟକ ଓ ସମୁଦ୍ରଲାଗି ନାନା ଦିଗରେ ପୃଥିବୀ ବିଭବଶାଳିନୀ ଏହା ମଧ୍ୟ ଏଥିରେ ବର୍ଣ୍ଣିତ ।

---

## ଆଶା

ଏହା ପାଞ୍ଚ ଖଣ୍ଡରେ ବିଭକ୍ତ । ପ୍ରଥମ ଖଣ୍ଡରେ ସଂସାର ପଥର ପଥିକ ନିଃସହାୟ ଅବସ୍ଥାରେ ପତିତ ହୋଇ ଆଶ୍ରୟ ଲୋଡ଼ିବା ବର୍ଣ୍ଣିତ । ଦ୍ୱିତୀୟ ଖଣ୍ଡରେ ଅନନ୍ୟଗତିକ ହୋଇ ଜଗଜ୍ଜନନୀଙ୍କଠାରେ ପଥିକ କପଟ ଶରଣ ପଶିଥିଲେ ଓ ବିନୀତ ପ୍ରାର୍ଥନା କରିଥିଲେ, ତାହା ବର୍ଣ୍ଣିତ । ତୃତୀୟ ଖଣ୍ଡରେ ଜଗଦମ୍ବାଙ୍କ ଆଶ୍ୱାସନା ଓ ଚତୁର୍ଥ ଖଣ୍ଡରେ ପଥିକର ଦୁଃଖ ନିରାକରଣ ସହିତ ପ୍ରକୃତ ଜ୍ଞାନର ଉଦୟ ଚର୍ଚ୍ଚିତ । ପଞ୍ଚମ ଖଣ୍ଡରେ ଜଗଦମ୍ବାଙ୍କୁ ଜ୍ୟୋତିର୍ମୟ ଦେବତାମାନଙ୍କର ଅଭିନନ୍ଦନ ଶବ୍ଦ ପ୍ରଦତ୍ତ ।

ଏହି କବିତାଟି କବିଙ୍କ ଆଶାବାଦର ତରଳ ବିଳାସରେ ରମଣୀୟ ହୋଇପାରିଛି । ସଂସାର ପଥରେ ମାନବ ସତ୍ପଥ ଭୁଲିଯାଇ ଅସତ୍ ମାର୍ଗରେ ଗତି କରିବା ସାଧାରଣ କଥା । ବିଶ୍ୱ-

ଜନମାଙ୍କଠାରେ ଅନ୍ତରର ଗଭୀର ବିଶ୍ୱାସ ଅଭାବରୁ ମୁଗ୍ଧ ମାନବ ଯଥାର୍ଥ ତତ୍ତ୍ୱ-ଆଲୋକ ପାଏ ନାହିଁ । ଫଳରେ ଜୀବନ ପଥରେ ପ୍ରତିବନ୍ଧକ ଉପସ୍ଥିତ ହେଲେ ସେ ନିଜର ପୌରୁଷ ବଳରେ ତାହା ଦୂର କରିବାକୁ ଚେଷ୍ଟା କରେ । ଶାରୀରିକ ବଳ, ମାନସିକ ଶକ୍ତି ବା ପୌରୁଷ ବିଫଳ ହେଲେ ମନୁଷ୍ୟ ନିରାଶ ହୋଇ ପଡ଼େ । ଜ୍ଞାନ, ଭକ୍ତି ଓ କର୍ମ ଦିଗରେ ତାହାର ପ୍ରେରଣା ସୁପ୍ରଲୁପ୍ତ ହେବାକୁ ବସେ । କିନ୍ତୁ ବିଶ୍ୱମାତାଙ୍କର ଶରଣାପନ୍ନ ହେଲେ, ନିଜର ପୌରୁଷରେ କେବଳ ଗଭୀର ଆସ୍ଥା ନ ରଖି ଭଗବାନଙ୍କ ସମୀପରେ ଆତ୍ମସମର୍ପଣ କଲେ ସମସ୍ତ ମୋହାନ୍ଧକାର ଓ ନୈରାଶ୍ୟ କୁଜ୍ଝଟିକା ଦୂରୀଭୂତ ହୁଏ । ଏଥିରେ କବିଙ୍କର କେବଳ ଆଶା ଓ ବିଶ୍ୱାସ-ବାଦ ନୁହେଁ, ଭାବୁକତା ଓ ଭକ୍ତିମତ୍ତା ମଧ୍ୟ ଆତ୍ମପ୍ରକାଶ କରିଛି ।

---

## ଆତ୍ମ ସମର୍ପଣ

ଏଥିରେ ଜୀବାତ୍ମା ଓ ପରମାତ୍ମାଙ୍କ ସମ୍ବନ୍ଧ ବର୍ଣ୍ଣିତ ହୋଇଛି । ଯଥାସମ୍ଭବ ନ୍ୟାୟଶାସ୍ତ୍ରର ମତବାଦ ଦୃଷ୍ଟିରୁ ଉପନିଷଦର ତତ୍ତ୍ୱ ଅବଲମ୍ବନ କରି ଏ ସମ୍ବନ୍ଧ କବି ନିର୍ଦ୍ଦେଶ କରିଛନ୍ତି । ଭଗବାନ ପ୍ରାଣ ବୀଜର ବିନ୍ଦୋଷର କାରଣ, ଭଗବାନ ପରିପୂର୍ଣ୍ଣ ଆନନ୍ଦ ଓ ଜୀବାତ୍ମା ତାଙ୍କ ସନ୍ତାନ ସ୍ୱରୂପ । ଭଗବାନ୍ ମହାସିନ୍ଧୁ ସ୍ୱରୂପ । ସେଇ ମହାସିନ୍ଧୁର ଊର୍ମି ସ୍ୱରୂପ ହେଉଛି ଜୀବାତ୍ମା । ସେ ଆକାଶ ସ୍ୱରୂପ ଓ ଜୀବାତ୍ମା ଗଗନଗୃହ ପକ୍ଷୀ ସଦୃଶ । ଏ ସକଳ ନିର୍ଦ୍ଦେଶ କରି କବି ଭଗବତ୍ ପାଦରେ ଆତ୍ମସମର୍ପଣ କରିଛନ୍ତି । କବିଙ୍କ ଭାବବିହ୍ୱଳତା, ଭକ୍ତିମତ୍ତା, ଦାର୍ଶନିକତା ଓ ଅଧ୍ୟାତ୍ମବାଦ ଏଥିରେ ପ୍ରତିଫଳିତ ।

---

## ଭାରତ ଭାବନା

ଏହା ଏଗାର ଖଣ୍ଡରେ ବିଭକ୍ତ । ପ୍ରଥମ ଖଣ୍ଡରେ ଭାରତର ବର୍ତ୍ତମାନର ଅଧୋଗତି ଦର୍ଶନରେ କବିଙ୍କ ଆନ୍ତରିକ ପ୍ରକାଶ ପାଇଛି । ଦ୍ୱିତୀୟ ଖଣ୍ଡରେ ଭାରତକୁ ଧରାପୃଷ୍ଠରେ ମାନବର ଜ୍ଞାନ-ଚକ୍ଷୁର ପ୍ରଥମ ଉନ୍ମେଷ ସ୍ଥଳ ବୋଲି ସେ ବର୍ଣ୍ଣନା କରିଛନ୍ତି । ତୃତୀୟରେ ସରସ୍ୱତୀନଦୀ ଓ ତାହାର ତୀରରେ ଋଷିମୁଖୋଦ୍‌ଗୀତ ବେଦର ଗୌରବ, ଚତୁର୍ଥରେ ବଶିଷ୍ଠ, ଅତ୍ରି, ଜନକ ପ୍ରଭୃତି ଋଷିମାନଙ୍କର ବ୍ରହ୍ମନିଷ୍ଠା, ପଞ୍ଚମରେ ଦୟାମୟୀ ମୁନିକନ୍ୟା ଓ ବୀର କ୍ଷତ୍ରିୟ-କୁମାରୀମାନଙ୍କର ଗୌରବ, ଷଷ୍ଠରେ ରାମାୟଣର ନାୟକ ରାମଚନ୍ଦ୍ର, ନାୟିକା ସୀତା ଓ ଲେଖକ ବାଲ୍ମୀକିଙ୍କ କୀର୍ତ୍ତି, ସପ୍ତମରେ ହସ୍ତିନାପୁର କୌରବମାନଙ୍କର ଗୌରବୋଜ୍ଜ୍ୱଳ ରବି, ଅଷ୍ଟମରେ ମହାଭାରତ ଯୁଦ୍ଧର ବୀରତା, ନବମରେ ବୁଦ୍ଧଦେବଙ୍କର ମୁକ୍ତିଲାଗି ତତ୍ତ୍ୱ ପ୍ରଚାର, ଦଶମରେ ଅଶୋକ ଓ ଚନ୍ଦ୍ରଗୁପ୍ତ ପ୍ରମୁଖ ମହାରାଜାମାନଙ୍କର ମହାୟଶୀ କୀର୍ତ୍ତି ଓ ଶେଷରେ ସେମାନଙ୍କର କାଳଦର୍ପହାରୀ ଗୌରବଗାଥା ବର୍ଣ୍ଣିତ ।

ଆଲୋଚନା:—ଉତ୍କଳଗାଥାରେ କବି ଉତ୍କଳର ଗୁଣ ଗୌରବ ନାନା ଭାବରେ ଗାଇଛନ୍ତି । ଉତ୍କଳପ୍ରତି ତାଙ୍କର ଆନ୍ତରିକ ପ୍ରେମ ଥିଲେହେଁ ମହାଭାରତୀୟ ଭାବ ତାଙ୍କଠାରେ ଅଳ୍ପ ନଥିଲା । ଏ କବିତା କବିଙ୍କ ମହାଭାରତୀୟ ତଥା ମହାଜାତୀୟ ପ୍ରେମର ଅକାଟ୍ୟ ପ୍ରମାଣ ।

---

## ଉଦ୍‌ବୋଧନ

ଏଥିରେ କବି ବିଶ୍ୱଜନନୀଙ୍କୁ ନିଜର ଅନ୍ତରର ବେଦନା ଜଣାଇଛନ୍ତି ଏବଂ ଅଦମ୍ୟ ଜ୍ଞାନପିପାସା ଓ ବଳିଷ୍ଠ କର୍ମପ୍ରେରଣା ଧୀରେ ଧୀରେ ମନ୍ଦୀଭୂତ ହେବା ଅନୁଭବ କରି ପ୍ରତିକାର ଉଦ୍ଦେଶ୍ୟରେ ତାଙ୍କର ଶରଣାପନ୍ନ ହୋଇଛନ୍ତି । ଶେଷରେ ନିବେଦନ କରିଛନ୍ତି;

"ଫେଡ଼ ଅତୀତର ଦ୍ୱାର, ଆଦିମ ଆର୍ଯ୍ୟ ସଂସାର,
ସେହି ଆଦିମ ଲୀଳାଭୂମି ଦେଖାଅ ମା ଆଣି
ଦେଖୁ ସେହି ପୁଣ୍ୟାଲେଖ୍ୟ ଏ ପ୍ରାଣ ବଖାଣି ।

ଭାରତ ଭାବନାରେ ଯେଉଁ ମହାଜାତୀୟତା ପ୍ରତିଫଳିତ ତାହାର ଅନ୍ୟ ଏକ ନିଦର୍ଶନ ଉଦ୍‌ବୋଧନରେ ଦେଖିବାକୁ ମିଳେ । ଆର୍ଯ୍ୟ ଋଷିମାନଙ୍କର ଜ୍ଞାନବିଭବ ତାଙ୍କୁ ଏତେଦୂର ମୁଗ୍ଧ ଓ ଅନୁପ୍ରାଣିତ କରିଥିଲା ଯେ, ଭଗବତୀଙ୍କ ନିକଟରେ ସେ ଅଳି କରି କହିଅଛନ୍ତି:—

ଆର୍ଯ୍ୟ ଋଷି ମୁଗ୍‌ଧପ୍ରାଣେ ଦେବାବତରଣ
ମହୋଦାର ପୁଣ୍ୟ ଚିତ୍ର କରି ଦରଶନ
ଲଭିବି ବାଞ୍ଛିତ ଫଳ, ଏ ଚିତ୍ତ ହେବ ନିର୍ମଳ"।

ଏଥିରେ 'ଋଷି ପ୍ରାଣେ ଦେବାବତରଣ' ଦର୍ଶନ କରିବାଲାଗି ସେ ଇଚ୍ଛା ପ୍ରକାଶ କରିଛନ୍ତି ।

---

## ଋଷିପ୍ରାଣେ ଦେବାବତରଣ

ଏହା ସାତ ଖଣ୍ଡରେ ବିଭକ୍ତ । ପ୍ରଥମ ଖଣ୍ଡରେ ଉଷାର ବର୍ଣ୍ଣନା, ଦ୍ୱିତୀୟରେ ସରସ୍ୱତୀ ନଦୀକୂଳରେ ଦଣ୍ଡାୟମାନ ଋଷିଙ୍କ ଅଙ୍ଗ-

ପ୍ରତ୍ୟଙ୍ଗ ବର୍ଣ୍ଣନା, ତୃତୀୟରେ ଧ୍ୟାନମଗ୍ନ ସେହି ଋଷିଙ୍କର ଭାବାବେଶ ଓ ଅନ୍ତରରେ ବ୍ରହ୍ମଜ୍ୟୋତିର ସ୍ଫୁରଣ, ଚତୁର୍ଥରେ ବ୍ରହ୍ମର ସ୍ୱରୂପ । ପଞ୍ଚମରେ ଋଷିଙ୍କ ଉପରେ ଜ୍ୟୋତି ଦର୍ଶନର ପ୍ରତିକ୍ରିୟା, ଷଷ୍ଠରେ ଜ୍ୟୋତି ଦର୍ଶନ ପରେ ଋଷିଙ୍କ ଦିବ୍ୟଦୃଷ୍ଟି ଲାଭ ଓ ମାୟାଜାଲର ଅପସାରଣ ଏବଂ ଶେଷରେ ଋଷିଙ୍କ ବ୍ରହ୍ମସ୍ତୁତି ବର୍ଣ୍ଣିତ ।

ଆଲୋଚନାଃ—କବିଙ୍କର ଏହା ସର୍ବଶ୍ରେଷ୍ଠ କବିତା । ଏଥିରେ ଭାରତୀୟମାନଙ୍କର ନମସ୍ୟ ବେଦର ଉପଯୁକ୍ତ ବର୍ଣ୍ଣନା କରାଯାଇଛି । ଆନୁଷଙ୍ଗିକ ଭାବେ ଅନ୍ୟ ସମସ୍ତ କଥା ସନ୍ନିବେଶିତ ହୋଇଛି । କଲ୍ପନାଗୂଢ଼ତା, ଭାଷାର ସଂଯମ, ଦାର୍ଶନିକ ଭାବ, ରସୋଦ୍ରେକକାରୀ ବର୍ଣ୍ଣନା ନୈପୁଣ୍ୟ, ଗଭୀର ଅଧ୍ୟାତ୍ମବାଦ, ଏସବୁ ଏକାଧାରରେ ପ୍ରକାଶ ପାଇ ଏ କବିତାଟିର ଆସନ ଅତ୍ୟୁଚ୍ଚ କରିଦେଇଛି । ଏଥିରେ ଚତୁର୍ଥଖଣ୍ଡ ଓ ସପ୍ତମ ଖଣ୍ଡର ଅଧିକାଂଶ ଭାବ ଅକ୍ଷରଶଃ ବିଭିନ୍ନ ଉପନିଷଦରୁ ଗୃହୀତ । ଭାବଗୁଡ଼ିକ ଠାଏଠାଏ ଏତେ ଜଟିଳ ଯେ, ଉପନିଷଦ ଗ୍ରନ୍ଥରେ ପ୍ରବେଶ ନ ଥିଲେ ସେଗୁଡ଼ିକର ତତ୍ତ୍ୱ ଧରିହେବ ନାହିଁ । ଦୃଷ୍ଟାନ୍ତ ସ୍ୱରୂପ କେତେ ଗୋଟି ପଦ ଉଦ୍ଧାର କରି ଯାଇପାରେ:—

ଅମୂର୍ତ୍ତି ମୂରତି ଅହା ରୂପ ନିରୁପମ<br>
ଅନନ୍ତ ଅନଳ, ବ୍ୟାପି ସ୍ଥାବର ଜଙ୍ଗମ

× × × ×

ଦୂରରୁ ସୁଦୂର, ଶବ୍ଦ ବାକ୍ୟ ଅଗୋଚର<br>
ନିକଟୁ ନିକଟ, ପ୍ରାଣ ସମଗ୍ର ପ୍ରାଣର ।

× × × ×

ଯାଙ୍କ ମହିମାରେ ସ୍ଥିତ ନିଜେ ନିରାଧାର
ଅନନ୍ତ ଅଗମ୍ୟ ମହା ବ୍ରହ୍ମାଣ୍ଡ ଆଧାର ।

ପଦେ କଥାରେ କହିବାକୁ ଗଲେ ପ୍ରକୃତ ଚିତ୍ରଣଠାରୁ ଆରମ୍ଭ କରି ସୌନ୍ଦର୍ଯ୍ୟବୋଧର ପରାକାଷ୍ଠା ପର୍ଯ୍ୟନ୍ତ ସୁକବିତ୍ୱର ସକଳ ସୌଷ୍ଠବ ଏଥିରେ ବିଦ୍ୟମାନ ।

---

## ମହାଦେବୀ ଭିକ୍ଟୋରିଆ

ମହାରାଣୀ ଭିକ୍ଟୋରିଆଙ୍କ ମୃତ୍ୟୁରେ କବି ଏହା ଲେଖିଥିଲେ । ରାଣୀଙ୍କୁ ବିଶ୍ୱମାତା ଜ୍ଞାନକରି କବି ତାଙ୍କ ଯଶୋଗାନ କରିଛନ୍ତି । ତାଙ୍କ ସାମ୍ରାଜ୍ୟର ବିଶାଳତା, ଭିକ୍ଟୋରିଆ ଯୁଗ ସୂଚିତ ମହତ୍ତ୍ୱ, ମହନୀୟ ଗୁଣାବଳୀ, ପ୍ରଜାପାଳନ, ଶାସନବେଳେ ବିଜ୍ଞାନର ଉନ୍ନତି, ନାରୀମଙ୍ଗଳବିଧାନ, ଉଦାର ଧର୍ମନୀତି, ପଣ୍ଡିତ ସମ୍ମାନ, ବିଖ୍ୟାତ ଭାରତସମ୍ପର୍କୀୟ ଐତିହାସିକ ଘୋଷଣା, ଜାତି ଚରିତ୍ର ଓ ଶେଷରେ ମୃତ୍ୟୁ – ଏଗୁଡ଼ିକ ସୁନ୍ଦର ଭାବରେ ବର୍ଣ୍ଣିତ ।

ଏ କବିତା ପାଠକଲେ ଆଜି ୧୯୪୭ ଅଗଷ୍ଟ ୧୫ ତାରିଖ ପରେ ମଧୁସୂଦନଙ୍କ ବ୍ୟକ୍ତିତ୍ୱ ସମ୍ପର୍କରେ ଭ୍ରମ ଧାରଣା କୌଣସି କୌଣସି ପାଠକର ଜାତ ହେବା ଅସମ୍ଭବ ନୁହେଁ । କିନ୍ତୁ ତୋଷାମୋଦୀ ଭାବରେ ମଧୁସୂଦନ ତାହା ଲେଖି ନ ଥିଲେ । ଏକପକ୍ଷରେ ମଧୁସୂଦନଙ୍କ ଗମ୍ଭୀରତା, ସରଳତା ଓ ଅସୀମ ରାଜଭକ୍ତି, ଅନ୍ୟ ପକ୍ଷରେ ମହାରାଣୀଙ୍କ ଅଖଣ୍ଡ ଯଶ ଓ ଭାରତର ଉନ୍ନତି କଳ୍ପେ ଉଦାର ଘୋଷଣା – ଏ ଦୁଇଟି ଏକାଧାରରେ ରଖି ବିଚାର କଲେ ପ୍ରକୃତ ତଥ୍ୟ ବୁଝିହେବ । ପୁଣି ଭାରତୀୟ ନାରୀର ଯାହା ଆଦର୍ଶ, ସେହି ଆଦର୍ଶରେ କବି ରାଣୀଙ୍କର ଚିତ୍ର ଦେଇଛନ୍ତି । ତା ନ ହେଲେ

ସୁପଣ୍ଡିତବ୍ରତା, ବ୍ରହ୍ମଚର୍ଯ୍ୟ ଓ ସତୀ – ଏଗୁଡ଼ିକର କୌଣସି ଅର୍ଥ ବଳୀତରେ ଅଛି ବୋଲି ମନେ ହେଉନାହିଁ ।

## ଶୋକ ଲହରୀ

ଏହା ସାତ ଖଣ୍ଡରେ ବିଭକ୍ତ । ଉତ୍କଳର ବିଖ୍ୟାତ ସାହିତ୍ୟପ୍ରାଣ ବାମଣ୍ଡା ନରପତି ସୁବଳ ଦେବଙ୍କ ମୃତ୍ୟୁରେ କବି ଶୋକାଶ୍ରୁ ସମ୍ବରଣ କରି ପାରିନାହାନ୍ତି । ପ୍ରଥମ ଖଣ୍ଡରେ କବିଙ୍କ ଗଭୀର ଦୁଃଖ, ଦ୍ୱିତୀୟରେ ରାଜାଙ୍କ ଯଶୋଗାନ ସଙ୍ଗେ ଦୁଃଖୋଦ୍‌ଗାର, ତୃତୀୟରେ ପରଲୋକରେ ତାଙ୍କ ଗତି, ଚତୁର୍ଥରେ ତାଙ୍କ ରୂପ ବିଭବ, ପଞ୍ଚମରେ ତାଙ୍କ ସାହିତ୍ୟ ସାଧନା, ଷଷ୍ଠରେ ତାଙ୍କ ବିଚକ୍ଷଣ ମତି ଓ ଶେଷରେ ତାଙ୍କର ମଙ୍ଗଳ କାମନା ବର୍ଣ୍ଣିତ ।

ସୁବଳ ଦେବଙ୍କ ଜୀବନୀ ଯେ ଜାଣିଛି ସେଇ କେବଳ ଶୋକ ଲହରୀର ମହତ୍ତ୍ୱ ଉପଲବ୍ଧି କରି ପାରିବ । ଆଧୁନିକ ଉତ୍କଳ ସାହିତ୍ୟ ସୁବଳ ଦେବଙ୍କ ଉତ୍ସାହବାରି ବିତରଣରେ ଅଙ୍କୁରିତ, ପୁଷ୍ପିତ ଓ ଫଳିତ । କବିବର ରାଧାନାଥ ଚିଲିକାରେ ଲେଖିଛନ୍ତି :–

ଏ ଘୋର ଯାମିନୀ ଅବସାନ ଶଂସୀ
କାବ୍ୟତାର ରୂପେ ବୀର ଗଙ୍ଗବଂଶୀ
ଉଦିଲେ ପ୍ରଥମେ ବାମଣ୍ଡା ରାଜନ
ବାସୁଦେବ ବିଷ୍ଟ କଲ୍ୟାଣଭାଜନ

ପୁଣି ମହାଯାତ୍ରା ଷଷ୍ଠ ସର୍ଗର ଆରମ୍ଭରେ ଲେଖିଛନ୍ତି :—

ହେ ରାଜେନ୍ଦ୍ର ମହେନ୍ଦ୍ରନାଦୀ ପ୍ରଧାତର ପତି
ବାମଣ୍ଡା ମଣ୍ଡଳେଶ୍ୱର ଉତ୍କଳ ମଣ୍ଡନ
ତୁମ୍ଭ ଶୁଭ ଆଶୀର୍ବାଦେ ହୋଇଛି ଉତ୍କଳେ

ଦେବ ଦୁର୍ଗ, ଦେବ, ଏବେ ତୀର୍ଥ ସାରସ୍ୱତ
ବୁଧହଂସ କେଳିସରଃ ଅବଦ୍ୟା ଭୂପରେ ।

ଅଚ୍ୟୁତ ମଧ୍ୟ ଦରବାରରେ ଲେଖିଛନ୍ତି :—

ଥାଉ ଥାଉ ବାସୁଦେବ (ସୁବଳଦେବ) ନୃପବର
ବିଦ୍ୱାନ-ମଣ୍ଡଳ-କୁଳ ପଦ୍ମାକର
ନରେଶ ମହେନ୍ଦ୍ର ସ୍ୱଦେଶ ଗୌରବ
ଗୁଣିବୃନ୍ଦ ଅନୁବନ୍ଧନ ବାନ୍ଧବ ।

ସୁବଳଦେବଙ୍କର ଏ ପ୍ରଶଂସାରେ ଲେଶମାତ୍ର ଅତ୍ୟୁକ୍ତି ମିଶିନାହିଁ । କବି ଗଙ୍ଗାଧର ମଧ୍ୟ ସ୍ୱୀୟ ଉତ୍କଳଲକ୍ଷ୍ମୀରେ ଲେଖିଛନ୍ତି :—

ସଦାଶୟ ଗୁରୁ ସୁବଳ ନାମରେ
ଲୋକେ ହେବେ ପରିଚିତ
ତାହାଙ୍କ ଉଜ୍ଜ୍ୱଳ କାନ୍ତିରେ ଉତ୍କଳ
ହୋଇଥିବ ଆଲୋକିତ ।

କବିଙ୍କ ଏହି ଶୋକ ଓଡ଼ିଆ ପ୍ରାଣର ଶୋକ, ଅନ୍ତରର ବିଳାପ ମାତ୍ର । ଏହି ଶୋକରେ ତୋଷାମୋଦୀଙ୍କ ପରି ମିଥ୍ୟା ପ୍ରଶଂସା ନାହିଁ; ଅଛି ନିରାଟ ସତ୍ୟ । ପୁଣି "ଛନ୍ଦୋପୂରା" କାବ୍ୟ ଓଡ଼ିଆ ସାହିତ୍ୟର ଅମୂଲ୍ୟ ସମ୍ପଦ, ଏକଥା ଅସ୍ୱୀକାର କରି ହେବ ନାହିଁ । ରାଜାଙ୍କର ବର୍ଣ୍ଣନାରେ କବି ମହାକବି କାଳିଦାସଙ୍କ ରଘୁବଂଶ ଦ୍ୱାରା ପ୍ରଭାବିତ । କାଳିଦାସଙ୍କ "ଶାଳପ୍ରାଂଶୁର୍ମହାଭୁଜଃ" "ଭୀମକାନ୍ତୈର୍ନୃପଗୁଣୈଃ" "ଆକାରସଦୃଶଃପ୍ରାଜ୍ଞଃ" ପ୍ରଭୃତି ଶବ୍ଦ ଅବିକଳ ବ୍ୟବହୃତ । ଏ କବିତାର ପଞ୍ଚମଖଣ୍ଡରେ ସୁବଳ ଦେବଙ୍କ ସାହିତ୍ୟିକତାର ବର୍ଣ୍ଣନା ବଡ଼ ମନୋଜ୍ଞ ।

## କବିଙ୍କ ଆନନ୍ଦବାଦ

ମଧୁସୂଦନ ଥିଲେ ଏକାଧାରରେ କବି, ପଣ୍ଡିତ, ଦାର୍ଶନିକ ଓ ଧର୍ମପ୍ରଚାରକ । ସଂସ୍କୃତ ସାହିତ୍ୟରେ ତାଙ୍କର ଯଥେଷ୍ଟ ପ୍ରବେଶ ଥିଲା । ବ୍ରାହ୍ମଧର୍ମରେ ଦୀକ୍ଷିତ ହେବା ସମୟରୁ ଭାରତୀୟମାନଙ୍କର ନମସ୍ୟ ପରମପ୍ରାମାଣିକ ଉପନିଷଦ୍ ଚର୍ଚ୍ଚା ଦିଗରେ ତାଙ୍କର ଇଚ୍ଛା ବଳବତୀ ହୋଇ ଉଠିଥିଲା । ଉପନିଷଦ୍ ତାଙ୍କୁ ଯେ କେତେ ଦୂର ପ୍ରଭାବିତ କରିଥିଲା, ତାହାର ଜ୍ୱଳନ୍ତ ପ୍ରମାଣ କୁସୁମାଞ୍ଜଳିରୁ ସହଜରେ ଉପଲବ୍ଧ । ନବବସନ୍ତ ଭାବନା, ଏସୃଷ୍ଟି ଅମୃତମୟ ହେ, ଆତ୍ମ ସମର୍ପଣ ଓ ଋଷିପ୍ରାଣେ ଦେବାବତରଣ ପ୍ରଭୃତିର ଭାବରାଜି ଉପନିଷଦ୍‌ରୁ ଗୃହୀତ । ବିଶେଷତଃ ଶେଷୋକ୍ତ କବିତାର କେତେକ ଅଂଶ ଉପନିଷଦ୍‌ର ବିଭିନ୍ନ ମନ୍ତ୍ରର ଅବିକଳ ଅନୁବାଦ କହିଲେ ଅତ୍ୟୁକ୍ତି ହେବ ନାହିଁ । ସ୍ୱଭାବତଃ ସେ ଭାବୁକ ଓ ଧର୍ମପ୍ରାଣ । ଉପନିଷଦ୍ ଚର୍ଚ୍ଚା ଫଳରେ ବ୍ରହ୍ମର ଅନୁଧ୍ୟାନ ଓ ଉପାସନା ତାଙ୍କ ହୃଦରାଜ୍ୟରେ ସୁପ୍ରତିଷ୍ଠିତ ହେଲା । ସେ ସ୍ପଷ୍ଟ ହୃଦୟଙ୍ଗମ କଲେ ଯେ, ଜଗତର ପ୍ରତ୍ୟେକ ବସ୍ତୁରେ ଭଗବାନ୍ ଅବସ୍ଥିତ । ପରିଦୃଶ୍ୟମାନ ଜଗତର ଅଣୁପରମାଣୁ ଭଗବାନଙ୍କ ଅନନ୍ତ ଶକ୍ତି ଓ ବିକାଶର ପରିଚାୟକ ମାତ୍ର । ଆତ୍ମଜ୍ଞାନ ଜଗତର ସର୍ବଶ୍ରେଷ୍ଠ ଜ୍ଞାନ । ସେଥିପାଇଁ ପାଣ୍ଡିତ୍ୟର ଲୀଳାସ୍ଥଳୀ ଉତ୍କଳରେ ଅତି ଦୁଃସାଧ୍ୟ କଥା ଲକ୍ଷ୍ୟରେ ଲୋକେ କହିଥାନ୍ତି, "ଏ ତ ଗୋଟାଏ ବ୍ରହ୍ମବିଦ୍ୟା" ନିରନ୍ତର ସେଇ ବ୍ରହ୍ମଚିନ୍ତା ଫଳରେ ସଚ୍ଚିଦାନନ୍ଦମୟ ଭଗବାନ ତାଙ୍କ ମନ ପ୍ରାଣର ପରମ ଆକର୍ଷଣର ବସ୍ତୁ ହୋଇ ପଡ଼ିଲେ । ସାଧାରଣ ଦୃଷ୍ଟିରେ ଜଗତର ଯାହା କିଛି ଅସୁନ୍ଦର, କୁତ୍ସିତ, କୁରୂପ, ଭୀଷଣ, ବିରାଟ ବା କ୍ଷୁଦ୍ର, ସେ ସବୁ କବିଙ୍କ ଶାନ୍ତୋଜ୍ଜ୍ୱଳ ମନକୁ

ଏବଂ ଜ୍ଞାନଦୀପ୍ତ ନେତ୍ରଙ୍କୁ ଏକାନ୍ତ ଆନନ୍ଦମୟ ଦେଖାଗଲା । ଭଗବାନ୍ ହେଉଛନ୍ତି ସତ୍‌ସ୍ୱରୂପ, କାରଣ ଜଗତର ପ୍ରତ୍ୟେକ ବସ୍ତୁର ସତ୍ତା ନଷ୍ଟ ଓ ଧ୍ୱଂସ ହେଲେ ମଧ୍ୟ ଭଗବାନ ନିର୍ବିକାର ଅବିନଶ୍ୱର ଭାବରେ ଅବସ୍ଥାନ କରନ୍ତି । ଭଗବାନ ଚିନ୍ମୟ ବା ଚୈତନ୍ୟ ସ୍ୱରୂପ, କାରଣ ପ୍ରକୃତିପାଶରେ ବା ମାୟାଜାଲରେ ତାଙ୍କର କୌଣସି ଅଂଶ କଳଙ୍କିତ ହେବା ସମ୍ଭବ ନୁହେଁ । ସେ ଆନନ୍ଦମୟ, କାରଣ ନିରାନନ୍ଦ ହେବା ତାଙ୍କ ସ୍ୱଭାବ ପ୍ରତିକୂଳ । କବି ବିଭିନ୍ନ ସ୍ଥଳରେ ଭଗବାନଙ୍କ ଏହି ସ୍ୱରୂପ ଉଲ୍ଲେଖ କରି ଅଛନ୍ତି । ସେ ଚୈତନ୍ୟ ସ୍ୱରୂପ ଏବଂ ଜୀବବର୍ଗର ଉତ୍ପତ୍ତିର ମୂଳ । ଏହି ତତ୍ତ୍ୱ ଲକ୍ଷ୍ୟରେ କବି ଲେଖିଛନ୍ତି :—

ଏ ପ୍ରାଣ ବୀଜର ଉତ୍ସ ହେ ସବିତା
ତୁମ୍ଭ ପ୍ରେମାଲୋକେ ପିତା ।

ପୁଣି ଭଗବାନଙ୍କ ସର୍ବବ୍ୟାପକତା ଫୁଟାଇବାକୁ ଯାଇ ଏ ସୃଷ୍ଟି ଅମୃତମୟ ହେ କବିତାର ଉପସଂହାରରେ ଲେଖି ଅଛନ୍ତି:—

ଏ ସକଳ ମଧ୍ୟେ ବିବସନ୍ତି ବିଭୁ
ଶାଶ୍ୱତ ଅମୃତମୟ ହେ ।

ଭଗବାନଙ୍କର ସଚ୍ଚିଦାନନ୍ଦମୟ ରୂପର ପ୍ରଥମ ଦୁଇଟିର ସୂଚନା ଉପରେ ଦିଆଗଲା । ଶେଷଟିର, ଅର୍ଥାତ୍ ବିଭୁଙ୍କ ଆନନ୍ଦ-ମୟତ୍ୱ କିପରି ଭାବରେ ରଚିତ, ବର୍ତ୍ତମାନ ଆଲୋଚନା କରିବାର କଥା ।

ଏଠାରେ ମନେ ପକାଇଦେଲେ ବୋଧହୁଏ ଅସଙ୍ଗତ ହେବ ନାହିଁ ଯେ, ଆଧୁନିକ ଯୁଗର ପଞ୍ଚପୁରୋଧା ରାଧାନାଥ ଏ ଦୃଷ୍ଟିରୁ ମଧୁସୂଦନଙ୍କର ମତବାଦୀ ନ ଥିଲେ । ବରଂ ଏ କଥା ଦୃଢ଼ଭାବରେ

କ୍ରୁଦ୍ଧ ଯାଇ ପାରେ, ରାଧାନାଥ ଯେତକ ପରିମାଣରେ ବିଷାଦବାଦୀ, ମଧୁସୂଦନ ସେହି ପରିମାଣରେ ଆନନ୍ଦବାଦୀ ଥିଲେ । ଚିଲିକା, ମହାଯାତ୍ରା ପ୍ରଭୃତି କାବ୍ୟରେ ରାଧାନାଥଙ୍କ ବିଷାଦବାଦ ସ୍ପଷ୍ଟ ପ୍ରକଟିତ । ମଧୁସୂଦନ କିନ୍ତୁ ଆନନ୍ଦମୟ ପରମେଶ୍ୱରଙ୍କ ସଙ୍ଗ ଜାଗତିକ ଯାବତୀୟ ବସ୍ତୁରେ ଉପଲବ୍ଧି କରିଥିବାର ସୂଚନା ଦେଇଛନ୍ତି । ଇଂରାଜୀ କବି She ly ଏପରି ଲେଖିଥିଲେ :—

**Smiling they live and call life Pleasure.**
**But mine is dealt with another measure**

ରାଧାନାଥ ସେହିପରି ଲେଖିଛନ୍ତି :—

ହସିଖେଳି ସେଝୁ ଗମନ୍ତି ସମସ୍ତ
ଜୀବନ ମଣନ୍ତି ମହୋତ୍ସବମୟ
ହାୟ ଭାଗ୍ୟ ମୋର ପିହିତ ପାଷାଣେ
ମୋ ଜୀବନ ଗଢ଼ା ଅନ୍ୟ ଉପାଦାନେ ।

ପୁଣି ଅନ୍ୟତ୍ର କହିଛନ୍ତି,

ମାଗୁଛି ଚିଲିକା ମେଲାଣି ତୋଠାରେ
ବାହୁଡ଼ିବ ଏବେ ଦାରୁଣ ସଂସାରେ ।

ମାତ୍ର ଭକ୍ତକବି ମଧୁସୂଦନ ବିଶ୍ୱବାସୀଙ୍କୁ ଜଗତର କ୍ଷଣଭା ପରିବର୍ତ୍ତେ ମଧୁମୟ ଚିତ୍ର ଦେଖାଇ ଅଛନ୍ତି । ସେ କହିଛନ୍ତି,

ମଧୁମୟ ସୃଷ୍ଟି ସୁଧାମୟ ସୃଷ୍ଟି
ଏ ସୃଷ୍ଟି ଅମୃତମୟ ହିଁ
ରୋଗ ନାହିଁ ନାଶ ଅମୃତ ସନ୍ତତି
ପିଅ ସେ ଅମୃତ ପୟ ହିଁ ।

ଏହି ଉଦ୍‌ବୋଧନ ଦେଇ ଅମୃତମୟ ଭଗବାନଙ୍କ ରାଜ୍ୟ ବାସ୍ତବରେ କିପରି ଅମୃତମୟ, ତାହାର ବିମଳଚିତ୍ର ପ୍ରଦାନ କରି ନିଜ ଆନନ୍ଦବାଦ ପ୍ରଚ୍ଚାର କରି ଅଛନ୍ତି ।

ଏ ସୃଷ୍ଟି ଅମୃତମୟ—ଏତିକ ମାତ୍ର କହି କବି ନୀରବ ହୋଇ ନାହାନ୍ତି । ସୃଷ୍ଟିର ପ୍ରତ୍ୟେକ ବସ୍ତୁରେ ଅମୃତର ସଂଧାନ ପାଇ ପାଠକମାନଙ୍କୁ କାନ୍ତକୋମଳ ପଦାବଳୀ ସଂବଳିତ କବିତା ପାତ୍ରରେ ପରିବେଷଣ କରି ଅଛନ୍ତି । କବି ନିଜକୁ ଆନନ୍ଦମୟ ବିଭୁଙ୍କର ସନ୍ତାନରୂପେ ବର୍ଣ୍ଣନ କରିଛନ୍ତି । ଆତ୍ମସମର୍ପଣରେ ତାଙ୍କ ଲେଖନୀରୁ ନିର୍ଗତ ହୋଇଛି —

ତୁମ୍ଭେ ପରିପୂର୍ଣ୍ଣ ଆନନ୍ଦ ସ୍ୱରୂପ
ମୁଁ ସେ ଆନନ୍ଦ ସନ୍ତାନ

ଭଗବାନଙ୍କର ଏହି ଆନନ୍ଦମୟ ରୂପ ମାୟାମୋହଗ୍ରସ୍ତ ମାନବ ଦର୍ଶନ କରି ପାରେ ନାହିଁ । ମାନସ ରଙ୍ଗମଞ୍ଚରେ ମୋହର ଯବନିକା ଉତ୍ତୋଳିତ ହେଲେ ମାନବ ଅବଧାରଣ କରିପାରେ ଯେ, ଚରାଚର ବ୍ରହ୍ମାଣ୍ଡ ଆନନ୍ଦ ଉପାଦାନରେ ଗଠିତ । କବି ମଧ୍ୟ ଏହି ମୋହର ଘନାନ୍ଧକାର ମଧ୍ୟରେ ଧନେ ଅସ୍ତବ୍ୟସ୍ତ ହୋଇ ପଡିଥିଲେ । କିନ୍ତୁ ଆନନ୍ଦ କେବଳ ଅକ୍ଷୟ ସଂପଦ, ବିଷାଦ କ୍ଷଣସ୍ଥାୟୀ ଓ ଗଭୀର ଚିନ୍ତା ବଳରେ ଜ୍ଞାନୋଦୟ ହେଲେ ବିଷାଦର ସତ୍ତା ଲୁପ୍ତ ହୁଏ । କବିଙ୍କର ଯେତେବେଳେ ବିମଳ ଜ୍ଞାନ ଉଦିତ ହେଲା, ସେତେବେଳେ—

ଅପସରି ଗଲା ସହସା
ସେହି ଘୋର ତମିର
ଉଇଁଲା ହୃଦୟ ଆକାଶେ
ମହା ଜ୍ଞାନ ମିହିର,

ଫୁଟିଲା ମୋ ଜ୍ଞାନ ନୟନ—
ପଦ୍ମ ସେ ରବିକରେ
ଦେଖିଲି, ଯା ଚର୍ମ ନୟନେ
ଦେଖି ନାହିଁ ବିଶ୍ୱରେ ।

ତାହା ପରେ ନବୀନ ସଂଗୀତର ଅମୃତ ଝଙ୍କାରରେ ତାଙ୍କ ହୃଦୟ କନ୍ଦର ପ୍ରତିଧ୍ୱନିତ ହୋଇ ଉଠିଲା । ଅବହିତ ଚିତ୍ତରେ ସେ ଆକାଶବାଣୀ ମଧ୍ୟ ଶୁଣିବାକୁ ଲାଗିଲେ । ସେହି ବାଣୀ ସାଧାରଣ ବାଣୀ ନୁହେଁ । ତହିଁରୁ ବ୍ୟକ୍ତ ହେଉଥିଲା—ଜଗତର ସର୍ବଶ୍ରେଷ୍ଠ ତତ୍ତ୍ୱ, ଭଗବାନଙ୍କ ତତ୍ତ୍ୱ, ଆନନ୍ଦବାଦର ମୂଳ ସୂତ୍ର । ତହିଁରେ ପୁଣି ଉଲ୍ଲେଖ ଥିଲା—

ଅନାଇଣବାରେ ଦେଖରେ
ଜୀବ ନିଜ ଅନ୍ତରେ
ଅନନ୍ତ ଜୀବନ ଆଧାର
ସତ୍ୟ ଶିବ ସୁନ୍ଦରେ ।

ରାଧାନାଥଙ୍କ ପରି କବି ବିଷାଦବାଦୀ ନ ଥିଲେ ସତ୍ୟ; କିନ୍ତୁ ଦାର୍ଶନିକ ମହୋଦଙ୍କ ଭାବାବଳୀ ଦୃଷ୍ଟିରୁ ସୃଷ୍ଟିର ମାଧୁର୍ଯ୍ୟ ଯେତେ ଉପଲବ୍ଧି କଲେ ମଧ୍ୟ ବାସ୍ତବ ସଂସାରର ଦାରୁଣ ତାଡ଼ନାରୁ କେହି ଅବ୍ୟାହତ ପାଇନାହିଁ । Life is not a bed of roses. ଜୀବନ ହସଖେଳ ମଉଜ ମଜଲିସର ସ୍ଥାନ ନୁହେଁ । ମଧୁସୂଦନ ନିଜର କର୍ମପଥରେ ବହୁବାର ଯେ ମହା ପ୍ରତିବନ୍ଧକର ସମ୍ମୁଖୀନ ହୋଇଥିବେ ଏବଂ ମାନବ ମାତ୍ର ସୁଲଭ ନାନାବିଧ ଭ୍ରମ ପ୍ରମାଦ ତାଙ୍କୁ ଯେ ଗ୍ରସ୍ତ କରିଥିବ, ଏହା ଅସମୀଚୀନ ବୋଧ ହୁଏ ନାହିଁ । କିନ୍ତୁ ବିଭୁ ଚରଣାରବିନ୍ଦରେ ଯାହାର ସମସ୍ତ ଜୀବନ ଉତ୍ସୃଷ୍ଟ,

ଅମୃତମୟ ଭଗବାନଙ୍କର ଅନନ୍ତ ଆନନ୍ଦ ଚିନ୍ତନରେ ଯାହାର ହୃଦୟ ମଧୁମୟ ରସରେ ପରିପ୍ଳୁତ, ତାହା ପକ୍ଷରେ ଦୁଃଖ ଦୁର୍ଦ୍ଦଶାର ବିକଟ ରୂପ କେବଳ କ୍ଷଣସ୍ଥାୟୀ । ସେହି ହେତୁ ମଧୁସୂଦନ କେଉଁଠାରେ ବିଚଳିତ, କେଉଁଠାରେ ମୋହଗ୍ରସ୍ତ, କେଉଁଠାରେ ପଥଭ୍ରଷ୍ଟ ରୂପେ ନିଜର ପରିଚୟ ଦେଇ ଶେଷରେ ସେହି ବିଳାପରୁ ଆନନ୍ଦବାଦରୁ କିପରି ଆଶ୍ୱାସନା ଲାଭ କରିଥିଲେ, ସୁନ୍ଦର ଭାବରେ ବୁଝାଇଛନ୍ତି । ପ୍ରଥମ ପଦ୍ୟ ନବବସନ୍ତ ଭାବନାରେ କବିଙ୍କ କ୍ଷଣିକ ବିଷାଦବାଦ ଓ ବିକାଶ ଆନନ୍ଦବାଦର ବିମଳ ଚିତ୍ର ଏକତ୍ର ନିବଦ୍ଧ ହୋଇଛି ।

'ଏ ସୃଷ୍ଟି ଅମୃତମୟ ହେ' ପାଠ କଲେ ଜଣାଯାଏ, କବିଙ୍କ ଆନନ୍ଦବାଦର ଏହା ହେଉଛି ସର୍ବଶ୍ରେଷ୍ଠ ଉତ୍ସ । ଯାହା ସାଧାରଣ ଦୃଷ୍ଟିରେ ଆନନ୍ଦର ଆଧାର, ଚିତ୍ତ ପ୍ରସାଦନର କାରଣ, ଦୁଃଖ ଦୂରୀକରଣର ସହାୟ, ତାହା କବିଙ୍କୁ ସର୍ବ ପ୍ରଥମେ ଯେ ଆନନ୍ଦଦାୟକ ହୋଇଥିବ, ଏଥିରେ ସନ୍ଦେହର ଅବକାଶ ନାହିଁ । କିନ୍ତୁ ତାଙ୍କ ସୂକ୍ଷ୍ମ ଦୃଷ୍ଟି ସେତିକରେ ଅଟକି ରହିନାହିଁ । ସାଧାରଣର ଦୃଷ୍ଟି ଯେଉଁ ସମୂହ ଚିନ୍ତା ରାଜ୍ୟରେ, ମହର୍ମମୟ ବସ୍ତୁ ଜଗତରେ ପ୍ରବେଶ କରି ନ ପାରେ, ସେଠାରେ କବି ଦୃଷ୍ଟି ଅବାଧରେ ସଞ୍ଚାର କରେ । କବି ମଧୁସୂଦନ ଶ୍ରେଷ୍ଠ କବି; ମାନବ ସୁଲଭ ଗଭୀର ଅନ୍ତର୍ଦ୍ଦୃଷ୍ଟିରେ ମହମାମୟ ବସ୍ତୁ ଓ ଚିନ୍ତା ଜଗତରେ ପ୍ରବେଶ କରି ନାନା ତଥ୍ୟ ଉଦ୍‌ଘାଟିତ କରିଛନ୍ତି । ଅନନ୍ତ ନୀଳିମାମୟ ବିରାଟ ଗଗନ ଦର୍ଶନ କଲେ କାହାର ହୃଦୟ ଆନନ୍ଦରେ ସ୍ଫୀତ ନ ହୁଏ ? ଅକୂଳ ଅତଳ ଜଳନିଧି ତାଳେ ତାଳେ ଅମୀୟ ଛନ୍ଦରେ ଯେଉଁ ରସ ଲହରୀ ଢ଼ାଳି ଦିଏ, ତାହା ଆକଣ୍ଠ ପାନ କରିବା

ପାଇଁ କାହାର ମନପ୍ରାଣ ଉଦ୍‌ବଗ୍ନ ହୋଇ ନ ଉଠେ ? ଅମ୍ବର-ଚୁମ୍ବୀ ହିମାଳୟ ଓ ପର୍ବତ-ନିଃସୃତ ନଦୀମାନଙ୍କର ମନବିମୋହନ ମାଧୁରୀ କାହାର ହୃଦୟରେ ଆନନ୍ଦ ରସର ଅମୀୟ ଉତ୍ସ ସୃଷ୍ଟି କରି ନ ଦିଏ ? କିନ୍ତୁ କବି କେବଳ ଏହି ବିରାଟ, ଉଦାର ଓ ମହାନ୍ ଦୃଶ୍ୟମାନଙ୍କର ରୂପରେ ମୁଗ୍ଧ ହୋଇ ନାହାନ୍ତି । ପ୍ରଖର ପବନର ପ୍ରଚଣ୍ଡ ତାଣ୍ଡବରେ, ମରୀଚିକାମୟ ମରୁଭୂମିର ଜଳହୀନ ପ୍ରଦେଶରେ ମଧ୍ୟ ସେ ପାଇଛନ୍ତି ଅକ୍ଷୟ, ଅଖଣ୍ଡ ଓ ଅନନ୍ତ ଆନନ୍ଦ । ସେ ଲେଖିଛନ୍ତି—

ସେ ମୃଦୁଳ ଲାସେ । ସେ ଚଣ୍ଡ ତାଣ୍ଡବେ
ଅମୃତର ଅଭିନୟ ହେ
× × × ×
ସେ ମରୁ ଅନ୍ତରୁ ବହେ ସୁଧା ସ୍ରୋତ
ପିଅ ସେହି ସୁଧା ପୟ ହେ ।

କବିଙ୍କ ଦୃଷ୍ଟି ଉଲ୍ଲିଖିତ ବିରାଟ ଦୃଶ୍ୟରାଜିରୁ ନିବୃତ୍ତ ହୋଇ ଯେତେବେଳେ ଶସ୍ୟକ୍ଷେତ୍ରରେ, ଘନ ଅରଣ୍ୟାନୀ ଉପରେ ପଡ଼ିଛି, ସେ ଯେତେବେଳେ ସ୍ୱଚ୍ଛସରୋବର, ସ୍ଥାବର ଜଙ୍ଗମ, ପଶୁପକ୍ଷୀ ଉପରେ ଦୃଷ୍ଟିପାତ କରି ଅଛନ୍ତି, ତାଙ୍କର ଦୃଷ୍ଟି ଯେତେବେଳେ ଉଷା ସୁନ୍ଦରୀ, ସନ୍ଧ୍ୟାଦେବୀ, ଆଲୋକବିଳାସୀ ଦିବସ, ତମସ୍ୱିନୀ ଓ ଜ୍ୟୋତ୍ସ୍ନାମୟୀ ରଜନୀ ଆକୃଷ୍ଟ କରି ନେଇଛି, ସେତେବେଳେ ସେ ବିଷାଦର ଲେଶମାତ୍ର ସତ୍ତା କିମ୍ବା ଧରାପୃଷ୍ଠରେ ଅନୁଭବ କରି ନାହାନ୍ତି । ଜଗତ ଯେ କେବଳ ଅମୃତମୟ, ଏହା ଗୃହ ପରିବାର, ମାନବ ସମାଜ, ବନ୍ଧୁବାନ୍ଧବ ପ୍ରଭୃତିଙ୍କୁ ଅନ୍ୱେଷଣା କରି କବି ପ୍ରତିପାଦିତ କରିଛନ୍ତି । ଉତ୍କଳଭାରତୀ କୁନ୍ତଳ କୁମାରୀ ଯେପରି

ବିଷାଦବାଦରୁ ଉଚ୍ଛ୍ୱଳିତର ଆଶାବାଦ ଦିଗରେ ଧାବିତ ହୋଇ ଅଛନ୍ତି, କବି ନବବସନ୍ତ ଭାବନାରେ ତାହାହିଁ କରି ଅଛନ୍ତି । ରାଧାନାଥ ଚିଲିକାରେ ଯେଉଁ ଅକ୍ଷୟ ସୌନ୍ଦର୍ଯ୍ୟ ଅନୁଭବ କରିଥିବା ବର୍ଣ୍ଣନା କରିଅଛନ୍ତି, ମଧୁସୂଦନ ସେଇ ସୌନ୍ଦର୍ଯ୍ୟ ଓ ସେଇ ଆନନ୍ଦ ଜାଗତିକ ପ୍ରତ୍ୟେକ ବସ୍ତୁରେ ଉପଲବ୍ଧି କରିଛନ୍ତି । କବି ଯେତେ କବିତା ଲେଖିଛନ୍ତି, ତହିଁମଧ୍ୟରେ ଆନନ୍ଦବାଦ ବୋଧହୁଏ "ଏ ସୃଷ୍ଟି ଅମୃତମୟ ହେ" ପରି ଅନ୍ୟ କୌଣସିଥିରେ ପ୍ରକାଶ ପାଇନାହିଁ ।

ବିଖ୍ୟାତ "ଜୀବନଚିନ୍ତା"ରେ କବି ଯେଉଁ ବିଷାଦବାଦର ଆଭାସ ଦେଇଛନ୍ତି, ତାହା ତାଙ୍କ ସ୍ଥିରନିଶ୍ଚିତ ମତ ନୁହେ । ଆଲୋଚନା କଲେ ଜଣା ଯିବ, ସେଠାରେ ବଳିଷ୍ଠ ଆନନ୍ଦବାଦର ଦୃଢ଼ ଭିତ୍ତିରୂପେ ବିଷାଦବାଦର ଅବତାରଣା କରାଯାଇଛି ମାତ୍ର । କବି ପ୍ରଥମରେ "ଏ ସଂସାରେ ନାହିଁ ସୁଖଶାନ୍ତି" ଓ ଜଗତର ସବୁ ଭୌତିକ ସମ୍ପଦ "କାଳଚକ୍ର ଆବର୍ତ୍ତନେ କ ବେଗରେ ଆହା, ପଳାନ୍ତି ରେ ଅନୁସରି ନିଜ ନିଜ ରାହା" ପ୍ରଭୃତି ଲେଖିଥିଲେ ମଧ୍ୟ ସେଇ ଆନନ୍ଦର ଉତ୍ସରୂପେ ବିଭୁଦର୍ଶନକୁ ଲକ୍ଷ୍ୟ କରି ଲେଖିଛନ୍ତି, "ଅନନ୍ତ ମଙ୍ଗଳମୟ ବିଭୁ ଦରଶନେ, ପୁଣ୍ୟର ତପନ ଯେହ୍ନେ ପାପର ଭୁବନେ" । ଅନ୍ୟ ଅନେକ କବିତା ଏ ସମ୍ପର୍କରେ ଉଦ୍ଧାର କରାଯାଇ ପାରେ । ଉଦାହରଣ ସ୍ୱରୂପ, ଧ୍ୱନି କବିତାର "ମୋ ବାଣୀ ଶ୍ରବଣେ ଭାଜିବ ତୋହର ବିଷାଦ ଜଞ୍ଜାଳ ଦକା", 'ଶୋଭା' କବିତାର "ସେ ମହା ସଭାରେ ଚଳି ଆନନ୍ଦେ, ଗାଅ ହେ ବନ୍ଦନା ମଧୁର ଛନ୍ଦେ" ପ୍ରଭୃତି ପଦ୍ୟରୁ କବିଙ୍କ ଏ ମତବାଦ ନିଃସନ୍ଦେହରେ ଉପସ୍ଥାପନ କରାଯାଇପାରେ ।

ଜଗତରେ ଯେଉଁ ଆନନ୍ଦର ସ୍ରୋତ ନିରନ୍ତର ପ୍ରବାହିତ, ତାହା ଉପଲବ୍ଧି କରିବାପାଇଁ ସମସ୍ତେ ସମର୍ଥ ନୁହନ୍ତି । କାବ୍ୟ ମାଧୁରୀ ଓ ରସଗ୍ରହଣ ଯେପରି ଯୋଗ୍ୟତା ସାପେକ୍ଷ, ଆନନ୍ଦମୟ ଭଗବାନଙ୍କୁ ତାଙ୍କ ପ୍ରକାଶର ମଧ୍ୟ ଦେଇ ଅନ୍ତରେ ଅନ୍ତରେ ଅନୁଭବ କରିବା ସେହିପରି ଚିନ୍ତା, ଜ୍ଞାନ ଓ ଶକ୍ତିସାପେକ୍ଷ । ଉପନିଷଦ୍‌ରେ କହାଯାଇଛି, "ଆନନ୍ଦାଦ୍ଧେବ ଇମାନି ଭୂତାନି ଜାୟନ୍ତେ, ଆନନ୍ଦେ ନ ବିଲୀୟନ୍ତେ''—ଜଗତର ଉତ୍ପତ୍ତି, ସ୍ଥିତି ଓ ବିଲୟ ସବୁ ଆନନ୍ଦରେ ପର୍ଯ୍ୟବସିତ । ସତ୍ତ୍ୱଗୁଣର ଉଦ୍ରେକ ହେଲେ ବିଶ୍ୱର ପ୍ରତ୍ୟେକ ବସ୍ତୁରେ, ବିଶେଷତଃ ପ୍ରାକୃତିକ ଦୃଶ୍ୟାବଳୀରେ ଭଗବାନଙ୍କ ଅସୀ-ମତା ଓ ଆନନ୍ଦମୟତ୍ୱ ନିର୍ଦ୍ଦେଶ କରିହେବ । ଉଷାର ଦର୍ଶନରେ କବି ଯେଉଁ ଆନନ୍ଦ ଉପଲବ୍ଧି କରୁଥିଲେ, "ଋଷିପ୍ରାଣେ ଦେବାବତରଣ"ରେ ଅର୍ଯ୍ୟଋଷିଙ୍କ ଅନୁଭୂତି ଛଳରେ ତାହାହିଁ ବର୍ଣ୍ଣିତ ହୋଇଥିବା ଜଣାପଡ଼େ ।

ଦେବକନ୍ୟା ଉଷା ଶୋଭା ପୂର୍ଣ୍ଣ ସୋମରସ  
ପାନେ ଦେବ ଭାବେ ପୂର୍ଣ୍ଣ ହୃଦୟ ସରସ  
ମହାପ୍ରେମେ ବିସ୍ଫାରିତ ବିଶାଳ ଲୋଚନ  
ଏ ମହା ମାଧୁରୀ ଲୀଳା କରନ୍ତି ଦର୍ଶନ ।

ସେ ଲୀଳା ବାସ୍ତବରେ ମାଧୁର୍ଯ୍ୟମୟ । କେବଳ ଦେବକନ୍ୟା ଉଷାର ସୌନ୍ଦର୍ଯ୍ୟ ନୁହେ, ଗଭୀର ଅନ୍ତର୍ଦୃଷ୍ଟିରେ ଅବଲୋକନ କଲେ ସମଗ୍ର ସଂସାର ଅମୃତର ଗୋଟିଏ ଅଖଣ୍ଡ ସ୍ରୋତ ପରି ପ୍ରତୀତ ହେବ । ଉତ୍କଳ ସାହିତ୍ୟରେ ଆନନ୍ଦବାଦୀ-କବି-ସମାଜରେ କବି-ମଧୁସୂଦନ ଶୀର୍ଷ ସ୍ଥାନୀୟ ।

# କବିଙ୍କ ଆଶା ଓ ବିଶ୍ୱାସବାଦ

କବି ମଧୁସୂଦନ ଜଗତରେ ଭକ୍ତକବି ନାମରେ ପରିଚିତ ହେଲେହେଁ ତାଙ୍କୁ ଦାର୍ଶନିକ କବି ନାମରେ ଗୌରବ ମଣ୍ଡିତ କଲେ ତେବେ ଧନ୍ଦୁଏ ଅଯୌକ୍ତିକ ହେବ ନାହିଁ । ସେ ଜଣେ ଆଶାବାଦୀ ଦାର୍ଶନିକ । ରାଧାନାଥଙ୍କୁ ଯେବେ ବିଷାଦବାଦୀ ଦାର୍ଶନିକ ରୂପେ ବର୍ଣ୍ଣନା କରାଯାଇ ପାରେ, ମଧୁସୂଦନଙ୍କୁ ଆଶା ଓ ଆନନ୍ଦବାଦୀ ଦାର୍ଶନିକ କହିଲେ ଆଦୌ ଅସଙ୍ଗତ ହେବ ନାହିଁ । କେବଳ ଆଶା ନୁହେ, ବିଶ୍ୱାସର ମହତ୍ତ୍ୱ ପ୍ରତିପାଦନ କରିବାପାଇଁ କବି କମ୍ ଉଦ୍ୟମ କରିଥିଲେ ବୋଲି ଜଣାଯାଏ ନାହିଁ । ଚିଲିକା ପ୍ରଭୃତିରେ ରାଧାନାଥଙ୍କର ବିଷାଦବାଦ ଓ ନାରୀ-କବିତା ପ୍ରଭୃତିରେ ଗୋପବନ୍ଧୁଙ୍କର ଆଶାବାଦ ଯେଉଁପରି ପ୍ରକାଶ ପାଇଛି, କୁସୁମାଞ୍ଜଳିରେ ମଧୁସୂଦନଙ୍କର ଆଶା ଓ ବିଶ୍ୱାସବାଦ ସେଇ ତୁଳନାରେ କମ୍ ପ୍ରକାଶ ପାଇଛି ବୋଲି କହାଯାଇ ପାରିବ ନାହିଁ ।

ସଂସ୍କୃତ ଭାଷା କବିତା ନାଟକ ସଙ୍ଗେ ଦର୍ଶନ ଶାସ୍ତ୍ର ତଥା ଉପନିଷଦ୍, ଗୀତା ପ୍ରଭୃତି ଗ୍ରନ୍ଥରେ କବିଙ୍କର ପ୍ରବେଶ ଥିଲା । ସେ ଥରେ ଯାହା ଅଧ୍ୟୟନ କରୁଥିଲେ, ଅତ୍ୟନ୍ତ ଯତ୍ନ ଓ ପ୍ରଗାଢ଼ ପରିଶ୍ରମ ସହକାରେ ତାହା ଆୟତ୍ତ କରିବାକୁ ପଶ୍ଚାତ୍‌ପଦ ହେଉ ନଥିଲେ । ବିଶେଷତଃ ବ୍ରାହ୍ମଧର୍ମରେ ଦୀକ୍ଷିତ ହେବା ଦିନଠାରୁ ତାଙ୍କର ସ୍ୱାଭାବିକ ନିଷ୍ଠା ଓ ପ୍ରକୃତିଦତ୍ତ ଧର୍ମପ୍ରାଣତା ସମଧିକ ପରିମାଣରେ ବିକାଶ ଲାଭକଲା । ଗୀତା, ଉପନିଷଦ୍ ପ୍ରଭୃତିର ପରିଶୀଳନରୁ ସେ ସ୍ପଷ୍ଟ ଅବଗତ ହୋଇଥିଲେ ଯେ, ଯାହା ସଂସାର ଭଗବାନଙ୍କର ଲୀଳା ଭୂମି, ତାହାଙ୍କ ବିରାଟ ବିକାଶର

ଜ୍ୱଳନ୍ତ ପରିଚୃପ୍ତକ । 'ଜୀବନଚିନ୍ତାର' ଉଲ୍ଲିଖିତ ଉକ୍ତିରୁ ଜାଣି ହେବ, ଆଶାବାଦରେ କବିଙ୍କର ବିଶ୍ୱାସ କେତେଦୂର ଗଭୀର ଥିଲା ।

କାହିଁ ଶାନ୍ତି କାହିଁ ନିତ୍ୟ ସୁଖ,
ଯହିଁ ଲଭିବାର ଲାଗି ଅଛୁ ଅବିରତ ଜାଗି
ଚିରଦିନହେ ଆଶା ଦୀପ ଉଜ୍ଜ୍ୱଳ ମୟୂଖ
କାହିଁ ଗଲେ ପାଇପାରିବି ମୁକ୍ତ ପାପ ଦୁଃଖ ।

ରେ ହୃଦୟ ! ନ ହୁଅ କାତର
ସଂସାରର ବିଡ଼ମ୍ବନା ପାପ ସନ୍ତାପ ଯାତନା
ବିପଦ ଦୁର୍ଦ୍ଦିନ ତମ ଘୋର ଭୟଙ୍କର
ନିରେଖି ନିରାଶା-ବକ୍ଷେ ନ ହୁଅ ଜର୍ଜ୍ଜର ।

ଧର ଧୈର୍ଯ୍ୟ, ଘେନ ରେ ସାନ୍ତ୍ୱନା,
ଅଛି ସେହି ମହା ଧନ ସେ ମହା ସ୍ୱର୍ଣ୍ଣରତନ
ସେ ଅମୃତ ମହୌଷଧ ଯାହାର କାମନା
ଆଶା, ଜାଗ୍ରତ ସତତ କରେ ଉଦ୍ଦୀପନ ।

ଏଥିରେ ନୈରାଶ୍ୟ ଅନ୍ଧକାର ଜୀବନ ପଥରେ ମାରାତ୍ମକ ବିଷାକ୍ତ କଣ୍ଟକ ରୂପେ ଚିହ୍ନିତ । କେବଳ କୁସୁମାଞ୍ଜଳି ନୁହେଁ, ଅନ୍ୟ ଅନେକ କବିତାର, ଜୀବନଚିନ୍ତାର ଉଲ୍ଲିଖିତ ଅଂଶ ପରି ଆଶାବାଦ ସମ୍ବଳିତ ପଦ୍ୟମାନଙ୍କରୁ କବିଙ୍କ ମନୋଭାବ ସହଜରେ ବିଶ୍ଳେଷଣ କରାଯାଇ ପାରିବ । ଚିନ୍ତା ଯେପରି ଚିତା-ଠାରୁ ଭୟଙ୍କର, ନୈରାଶ୍ୟ ସେହିପରି ଜୀବନ୍ତ-ମରଣପରି ଏକାନ୍ତ ଭୟାବହ । ନିରାଶ ମାନବର ସଂସାର ଅନ୍ଧକାରମୟ ଓ

ଲକ୍ଷ୍ୟ-ଶୂନ୍ୟ । ଆଶାଶୂନ୍ୟ ହୃଦୟ ଓ ବିଷାଦକଳୁଷିତ ଚିତ୍ତ କେବେହେଲେ ମାନବକୁ କର୍ମକ୍ଷେତ୍ରରେ ଅଗ୍ରସର କରାଇ ନପାରେ । ଯେକୌଣସି ସତ୍‌କର୍ମରେ ଜୀବ ବିକାଶରେ ପ୍ରବୃତ୍ତ ହେବାକୁ ହେଲେ ସର୍ବପ୍ରଥମେ ତେଣୁ ଆବଶ୍ୟକ ହୋଇଥାଏ, ବିଶ୍ୱାସ ଓ ଆଶା । ଭାବୁକ, ଭକ୍ତ ଓ ଦାର୍ଶନିକ ମଧୁସୂଦନ ମାନବ ଚରିତ୍ର ଅଧ୍ୟୟନ କରିବାର ସୁଯୋଗ ପାଇଥିଲେ । ବହୁ ସ୍ଥଳରେ ସେ ବ୍ୟକ୍ତିବିଶେଷଙ୍କଠାରେ କର୍ମପ୍ରେରଣାର ଅଭାବ ଦେଖି ତାହାର କାରଣ ବିଶ୍ଳେଷଣ କରିଥିବା ଅସମ୍ଭବ ନୁହେ । ଜୀବନ-ଚିନ୍ତାରେ 'ଧର ଧୈର୍ଯ୍ୟ ଘେନ ରେ ସାନ୍ତ୍ୱନା' ଏହି ସମ୍ଭାବିତ ଲୋକ-ଚରିତ୍ର ବିଶ୍ଳେଷଣର ମୂକ ସାକ୍ଷୀ ଦେଉଥିବାପରି ବୋଧ ହୁଏ । ଆଶାବାଦର ଉପସ୍ଥାପନରେ କବି ପ୍ରଚାରକର କାର୍ଯ୍ୟ କରିଛନ୍ତି, ଜଡ଼ ପ୍ରାଣରେ ସ୍ପନ୍ଦନ ଜନ୍ମାଇବାର ଉଦ୍ୟମ କରିଛନ୍ତି ।

ବ୍ରାହ୍ମଧର୍ମରେ ଦୀକ୍ଷିତ ହେବାପରେ କବିଙ୍କ ନିଷ୍ଠା ଓ ସରଳତା ଅଧିକତର ହୋଇ ଉଠିଥିଲା । ତାଙ୍କ ଜୀବନର ଆଲୋଚନାରୁ ପ୍ରମାଣ ମିଳେ ଯେ, ଉତ୍କଳରେ ବ୍ରାହ୍ମଧର୍ମର ପ୍ରଚାର ଓ ପ୍ରସାର ଦିଗରେ ସେ ନିଜ ଜୀବନର ବହୁ ମୂଲ୍ୟବାନ୍ ସମୟ ଓ ଶକ୍ତି ବ୍ୟୟ କରିଥିଲେ । ଧର୍ମାନ୍ତର ଗ୍ରହଣ ପରେ ତାଙ୍କୁ ଧର୍ମ-ତତ୍ତ୍ୱର ଚିନ୍ତା ଓ ଲୋକହିତକର କାର୍ଯ୍ୟର ସାଧନ ପ୍ରିୟ କର୍ତ୍ତବ୍ୟ ପରି ବୋଧ ହେଲା । ବ୍ରାହ୍ମଧର୍ମରେ ସେ ଏତେ ଦୂର ମୁଗ୍ଧ ହୋଇ ଥିଲେ ଯେ ବ୍ୟାପକ ହିନ୍ଦୁ କର୍ମରେ ତାଙ୍କର ଆସ୍ଥା ରହିଲା ନାହିଁ । ତେଣୁ ସେ ମନେ କଲେ, ନାନା ଦୈନନ୍ଦିନ ଆଚାର ବ୍ୟବହାର ପ୍ରତି ଦୃଷ୍ଟି ନ ଦେଇ ଭାରତବାସୀମାନେ ବ୍ରହ୍ମବାଦୀ ହେବା ଉଚିତ । ସେ ମନେକଲେ, ମାନବ ଅନ୍ୟ ଯାହା କରୁ ବା ନ କରୁ,

ଭଗବାନଙ୍କଠାରେ ଦୃଢ଼ ବିଶ୍ୱାସ ଓ ହୃଦୟରେ ଅଟଳ ଆଶା ପୋଷଣ କରିବା ଆବଶ୍ୟକ । "ନବଯୁଗର ଅଭିଷେକ" ରେ ବ୍ରାହ୍ମଧର୍ମର ଉତ୍କର୍ଷ ଓ ଉପାଦେୟତା ପ୍ରତିପାଦନ କରିବାକୁ ଯାଇ ବନ୍ଧୁ ବିଷୟ ମଧ୍ୟରେ ନିମ୍ନଲିଖିତ କଥାର ଉଲ୍ଲେଖ କରିବାକୁ ସେ ଭୁଲି ନାହାନ୍ତି ।

ନବୀନ ଯୁଗର ତରୁଣ
ଉଷା ଅରୁଣ ଜ୍ୟୋତି
ଆଶାର ପ୍ରସନ୍ନ କିରଣ
ଲୀଳାମୟ ବିଭୂତି ।

ନବଯୁଗ ଅଭିଷିକ୍ତ ହେଲେ, ବ୍ରାହ୍ମଧର୍ମର ପ୍ରଚାର ଓ ପ୍ରସାର ଘଟିଲେ କୁସଂସ୍କାର ଦୂରୀଭୂତ ହେବ, ଲୋକଙ୍କର ନୈରାଶ୍ୟ ଅନ୍ଧକାର ଅପସାରିତ ହେବ ଓ କର୍ମପ୍ରେରଣା ଜାଗ୍ରତ ହେବ । ବ୍ରାହ୍ମମାନେ ଜଗତରେ ଆନନ୍ଦମୟ ଈଶ୍ୱରଙ୍କ ସତ୍ତାରେ ବିଶ୍ୱାସ କରୁଥିବାରୁ ସେମାନଙ୍କର ଆଶା ସଂସାରରେ ପ୍ରତିହତ ହେବାର ବସ୍ତୁ ନୁହେ ।

ଉଲ୍ଲିଖିତ ସୂଚନାଟି ଛାଡ଼ିଦେଲେ 'ଆଶା' ଓ "ଉଦ୍‌-ବୋଧନ" କବିତା ଦ୍ୱୟ ଆଶାବାଦର ମଧୁର ମନ୍ତ୍ରରେ ଅଭିମନ୍ତ୍ରିତ ହେବା ଦେଖାଯାଏ । ମାନବ ସଂସାରର ଦୁର୍ଗମ ପଥରେ ଗୁଲନ୍ତି । ପଥର ଜଟିଳତା ହେତୁ ପ୍ରକୃତ ପନ୍ଥା ତ୍ୟାଗ କରି ଅସତ୍‌ ପଥରେ ଗତି କରିବା ତା ପକ୍ଷରେ ଅସମ୍ଭବ ନୁହେଁ । କାମ, କ୍ରୋଧ, ଲୋଭ, ମୋହ ପ୍ରଭୃତି ଷଡ଼୍‌ରିପୁ ବଦନ ବ୍ୟାଦାନ କରି ତାକୁ କବଳିତ କରିବାକୁ ନିରନ୍ତର ଉଦ୍ୟତ । ସଂସାର ପଥର ଯାତ୍ରୀ ଦିଗଭ୍ରାନ୍ତ ବିସ୍ତାରୀ ମୋହାନ୍ଧକାର ଓ ଶୋକ-ମେଘର ଦର୍ଶନରେ ତଥା ଈର୍ଷାର ବିକଟ

ହାସ୍ୟ ଓ କ୍ରୋଧ ଦ୍ୱେଷର ଭୟଙ୍କର ଗର୍ଜନରେ ମ୍ରିୟମାଣ ହେବା ଅସ୍ୱାଭାବିକ ବା ଆଶ୍ଚର୍ଯ୍ୟଜନକ ନୁହେ । ଅଜ୍ଞାନ ବାଳକ ଅସହାୟ ଅବସ୍ଥାରେ ଅନ୍ୟଠାରୁ ସାହାଯ୍ୟ ପ୍ରାପ୍ତିର ଆଶା ନ ରଖି, ରଖିଥାଏ କେବଳ ସ୍ନେହମୟୀ ଜନନୀଠାରେ ! ତାର ଗଭୀର ବିଶ୍ୱାସ, ଜନନୀ ତାର କରୁଣ କ୍ରନ୍ଦନ ଶୁଣିବା ମାତ୍ରେ ତା ନିକଟରେ ଉପସ୍ଥିତ ହୋଇ ସମସ୍ତ ଦୁଃଖର କାରଣ ଓ ଅଭାବ ଅସୁବିଧା ଦୂର କରିବାରେ ତିଳେମାତ୍ର ପଶ୍ଚାତ୍‌ପଦ ହେବେନାହିଁ କିମ୍ବା କାଳକ୍ଷେପ କରିବ ନାହିଁ । ଆଶାବାଦୀ ଦାର୍ଶନିକ ପକ୍ଷରେ ଏହି ଯୁକ୍ତିହିଁ ପ୍ରଯୁଜ୍ୟ । ଆଶାବାଦୀମାନଙ୍କ ଦୃଷ୍ଟିରେ ଆଶା ଓ ବିଶ୍ୱାସ ପରସ୍ପର ଘନିଷ୍ଠ ଭାବରେ ଆବଦ୍ଧ ଓ ଅଙ୍ଗାଙ୍ଗୀ ଭାବରେ ବିଜଡ଼ିତ । ବିଶ୍ୱାସହୀନର ଆଶା ନିରର୍ଥକ । ଆଶାବାଦୀର ବିଶ୍ୱାସହୀନତା ହାସ୍ୟାସ୍ପଦ । ଅସହାୟ ଶିଶୁ ତୁଲ୍ୟ ଅଦୃଷ୍ଟ ଶକ୍ତିର ନିଷ୍ଠୁର ତାଡ଼ନାରେ ଶୋକ ଜର୍ଜ୍ଜରିତ ମାନବମାନେ ସମସ୍ତ ବିଶ୍ୱାସର ମୂଳାଧାର ଭଗବାନଙ୍କ ଶରଣାପନ୍ନ ହୁଅନ୍ତି । ଦୃଷ୍ଟାନ୍ତ ସହ ଏ ତତ୍ତ୍ୱର ବ୍ୟାଖ୍ୟାନ କରି କବି ପାଠକର ମନରେ ପ୍ରତ୍ୟୟ ଜନ୍ମାଇବାର ଚେଷ୍ଟା କରିଛନ୍ତି । ପଥଭ୍ରଷ୍ଟ ମାନବ ଶିଶୁ ଯେତେବେଳେ ଗଭୀର ବିଶ୍ୱାସରେ ବିଶ୍ୱ ବିମୋହିନୀ, ବିଶ୍ୱତାରିଣୀଙ୍କୁ ଜଗଦମ୍ବା ବୋଲି ସମ୍ବୋଧନ କରି ତାଙ୍କ ଶରଣାପନ୍ନ ହେଲା, ସେତେବେଳେ ଆକାଶବାଣୀ ବ୍ୟାଜରେ ଜନନୀ ଉତ୍ତର ଦେଇଥିଲେ—

ଉଠ ବତ୍ସ ! ଆସ ପାଶେ ନୟନ ପିଠାଇ
ଦେଖ ରେ ତୁ ବାରେ,
ଭ୍ରାନ୍ତ ବଶେ ମୋର କୋଡ ଛାଡ଼ି କାହିଁପାଇଁ
କାନ୍ଦୁ ନିରାଶାରେ ।

ଦେଖ ରେ ନୟନ ଫେଡ଼ ମୋ ନୟନ ପ୍ରଭା
ଆଶା-ପ୍ରଭାମୟୀ
ବନାଶି ତମିର ରାଶି ବିଶ୍ୱାସ ସୁଲଭା
ବିଶ୍ୱ ଉଜଳଇ ।

ଏଠାରେ 'ଆଶା' ଓ 'ବିଶ୍ୱାସ' ଏ ଦୁଇଟି ଶବ୍ଦ ଲକ୍ଷ୍ୟ କଲେ କବିଙ୍କ ମତବାଦର ମୂଳ ସୂତ୍ର ଧରି ହେବ । ଜନନୀଙ୍କର ଏ ଉପ-ଦେଶ ବାସ୍ତବରେ ଆକାଶବାଣୀ ସଂଭୂତ ନୁହେ । ଏହା ମୁଗ୍ଧ ବିଶ୍ୱମାନବର ଉପକାର ଓ କଲ୍ୟାଣ କଲ୍ପେ କବିଙ୍କ ନିଜର ଉପଦେଶ ମାତ୍ର । ଗଭୀର ଅନୁଭୂତିରୁ କବି ହୃଦୟଙ୍ଗମ କରିଥିଲେ, ନାନାବିଧ ଦୁଃଖ ଶୋକକ୍ଲିଷ୍ଟ ମାନବର ଏକମାତ୍ର ସହାୟ ହେଉ-ଛନ୍ତି ସେହି କରୁଣାମୟୀ ଭଗବତୀ । ମାତାର ନୟନ କାନ୍ତି ଓ ତହିଁରୁ ବିଚ୍ଛୁରିତ ପ୍ରେମଜ୍ୟୋତି ଦେଖିଲେ ରୋରୁଦ୍ୟମାନ ଶିଶୁ ଯେପରି ଆଶ୍ୱସ୍ତ ହୁଏ, ଭଗବତୀଙ୍କର କୃପା କଟାକ୍ଷ ପାତରେ ସେହି ପରି ପୀଡ଼ିତମାନଙ୍କର ପୀଡ଼ା ଶାନ୍ତ ହୁଏ । କିନ୍ତୁ ଭଗବତୀଙ୍କ କରୁଣା ସହଜରେ ଉପଲଭ୍ୟ ନୁହେ । ତାଙ୍କ ନେତ୍ରର ଜ୍ୟୋତି ହେଉଛନ୍ତି ବିଶ୍ୱାସ-ସୁଲଭା । ଗଭୀର ଭଗବତ୍ ବିଶ୍ୱାସ ନ ଥିଲେ, ସେ ଦିବ୍ୟ-ଜ୍ୟୋତି ଦର୍ଶନ ଅସମ୍ଭବ । ସାଧାରଣ ଶିଶୁ ଜନନୀର ନୟନରେ ସ୍ନେହପ୍ରଭା ଦେଖିବା ପରି ବିଶ୍ୱାସୀ ମାନବ ଜଗଜ୍ଜନନୀଙ୍କ ନେତ୍ରରେ ଦେଖିବାକୁ ପାଏ ଆଶାର ବିମଳ ଜ୍ୟୋତି । ସେ ଜ୍ୟୋତି ଦର୍ଶନରେ ଶୁଷ୍କ ସୁପ୍ତ ହୃଦୟରେ ବଳ, ଶକ୍ତି ଓ ସାହସ ସଂଞ୍ଚାର ଲାଭ କରେ । ନବବସନ୍ତ ଭାବନାରେ ମଧ କବି କହିଅଛନ୍ତି, ଗଭୀର ଅନ୍ଧକାର ଭାବରେ କଲେ ଯେଉଁ ଜ୍ଞାନାଲୋକରେ ହୃଦୟପଦ୍ମର ଉଦ୍ଭାସିତ ଓ ଉଜ୍ଜ୍ୱଳ ହୋଇ ଉଠିବ, ତଦ୍ୱାରା ମୋହର ଆବରଣ ଅପସାରିତ

ହେବ । ତାହା ସଙ୍ଗେ ସଙ୍ଗେ
ଆଶା-ପାରିଜାତ ଫୁଟିବ
ହୃଦ-ନନ୍ଦନ ବନେ
ଜ୍ଞାନଭକ୍ତି କର୍ମ ସୌରଭ
ବ୍ୟାପିଯିବ ଜୀବନେ ।

ଜ୍ଞାନ, ଭକ୍ତି ଓ କର୍ମ ଏହି ତନୋଟି ମୁକ୍ତିର ପ୍ରକୃଷ୍ଟ ସାଧନ । ବିଶ୍ୱବିଖ୍ୟାତ ଭଗବଦ୍ ଗୀତା ମଧ୍ୟ ଏଇ ସାଧନ ତ୍ରିତୟର ମହତ୍ତ୍ୱ ଉଦ୍‌ଘୋଷିତ କରୁଛି । କାରଣ ପଣ୍ଡିତମାନଙ୍କ ମତରେ ଗୀତାର ଅଠର ଅଧ୍ୟାୟ ସ୍ଥୂଳତଃ ତନଭାଗରେ ବିଭକ୍ତ—ପ୍ରଥମ ଛ ଅଧ୍ୟାୟ କର୍ମକାଣ୍ଡ, ଦ୍ୱିତୀୟ ଛ ଅଧ୍ୟାୟ ଭକ୍ତି କାଣ୍ଡ ଓ ତୃତୀୟ ଛ ଅଧ୍ୟାୟ ଜ୍ଞାନକାଣ୍ଡ ନାମରେ ଅଭିହିତ । କବି ମଧୁସୂଦନଙ୍କର ଭଗବଦ୍ ଗୀତା କେବଳ ନମସ୍ୟ ଧର୍ମଗ୍ରନ୍ଥ ନ ଥିଲା, ଥିଲା ପ୍ରିୟ ପାଠ୍ୟ ମଧ୍ୟ । ତେଣୁ ଉଲ୍ଲିଖିତ ଉକ୍ତିର ମୂଳରେ ଏହି ସାଧନ ଗୁଡ଼ିକର ସାର ମର୍ମ ଯେ ଆତ୍ମପ୍ରକାଶ କରିଛି, ଏହା ଯୁକ୍ତିଯୁକ୍ତତାର ସହିତ ଉପପାଦିତ କରାଯାଇପାରେ । କବିଙ୍କ ମତରେ ଆଶାହୀନ ମାନବ କର୍ମ, ଭକ୍ତି ଓ ଜ୍ଞାନ କୌଣସି କ୍ଷେତ୍ରରେ ପ୍ରବୀଣତା ଲାଭ କରି ନ ପାରେ । ତେଣୁ ଜୀବନର ପରମ ପୁରୁଷାର୍ଥ ଲାଭ ତାହା ପକ୍ଷରେ ସର୍ବଥା ଆକାଶ-କୁସୁମ । ସ୍ୱର୍ଗ ଲାଭ ତଥା ଜୀବନର ଚରମ ଉତ୍କର୍ଷ ସାଧନର ମୂଳରେ ଆଶାବାଦର ପରମ ଉପାଦେୟତା ଅସ୍ୱୀକାର୍ଯ୍ୟ ନୁହେଁ । ବରଂ ସର୍ବଥା ଅବଲମ୍ବନୀୟ । ସେଥି ପାଇଁ କବି ପ୍ରସ୍ତାବକ ରୂପେ ଲଳିତ ଛନ୍ଦରେ ଗାଇଛନ୍ତି—

ଭକ୍ତି-ପ୍ରୀତି-ସହଚରୀ ଆଶା-ଅଧିଷ୍ଠିତ
ଏ ସ୍ୱର୍ଗ-ତୋରଣ
ସଦା ଅବାରିତଦ୍ୱାର ପ୍ରଭା-ବିଭୂଷିତ
ବିଶ୍ୱ-ବିମୋହନ ।

ଆଶାବାଦର ପରମ ସତ୍ୟତା ଏପରି ଉଦ୍‌ଘୋଷିତ କରି କବି ପ୍ରେମ ପରିପ୍ଲୁତ ପ୍ରାଣରେ ପୁଣି ଗାଇଛନ୍ତି—

ଜୟ ଜଗଦମ୍ବା ଦେବ- ପ୍ରଭା ମୂର୍ତ୍ତି ମତି
ଆଶା ପ୍ରଭାମୟୀ,
ବ୍ରହ୍ମାଣ୍ଡ ପାବନ ମାତଃ ! ଜୟ ଭଗବତି
ଜୟ ପୁଣ୍ୟମୟି ।

କବି ଭଗବତୀଙ୍କୁ କେତେ ରୂପରେ, କେତେ ଭାବରେ ବର୍ଣ୍ଣନା କରିଛନ୍ତି, ତାହାହିଁ ଲକ୍ଷ୍ୟ କରିବାର କଥା ।

ପ୍ରତ୍ୟକ୍ଷ ଭାବରେ ହେଉ ବା ପରୋକ୍ଷ ଭାବରେ ହେଉ, ଅନ୍ତରକୁ ଯେଉଁ ଭାବଧାରା ସବୁବେଳେ ଆଲୋଡ଼ିତ କରେ, ତାହାର ଆତ୍ମପ୍ରକାଶ ନିରୁଦ୍ଧ କରିବା ମାନବ ପକ୍ଷରେ ସହଜସାଧ୍ୟ ହୋଇପାରେ ନାହିଁ । ସେଥିପାଇଁ ଉଦ୍‌ବୋଧନ କବିତାରେ କବି ଭଗବତୀଙ୍କୁ ନିଜର ଅଧୋଗତି, ମାନସିକ ଅବସାଦ ଓ ବିଷାଦ ଜ୍ଞାପନ କରିବା ସଙ୍ଗେ ସଙ୍ଗେ କହି ଅଛନ୍ତି—

ଆଜି ବହୁଦିନ ଅନ୍ତେ ବ୍ୟାକୁଳ ଅନ୍ତରେ
ନିରାଶାର ଆଶା, ତୋର ଅଭୟ ପୟରେ
ଅନୁତାପ ଅଶ୍ରୁ ଜଳ
ଢାଳିଦେବି ନିରମଳ
ଅଭିନବ ଜ୍ୟୋତି ତବ ପଦ ପରଶନରେ
ଏ ପ୍ରାଣେ ଲଭିବି ବୋଲି ଡାକଇ କାତରେ ।

ଏଠାରେ ଭଗବତୀଙ୍କୁ ନିରାଶାର ଆଶାରୂପେ ବର୍ଣ୍ଣନା କରି କବି ପ୍ରକାରାନ୍ତରରେ ଆଶାର ମହତ୍ତ୍ୱ ଉଦ୍‌ଘୋଷିତ କରିବା ଫଳରେ ଆଶାବାଦର ମଧ୍ୟ ପ୍ରଚାର କରିଅଛନ୍ତି ।

ମଧୁସୂଦନଙ୍କ ଆଶାବାଦିତାର ଅନ୍ୟ ଏକ ପ୍ରମାଣ ମଧ୍ୟ କୁସୁମାଞ୍ଜଳିରୁ ଉଦ୍ଧାର କରାଯାଇପାରେ । ଭାରତ ଭାବନାରେ କବିଙ୍କର ମହାଜାତୀୟ ଭାବ ପ୍ରତିଫଳିତ । ବିଶ୍ୱ ମାନବ ସମାଜରେ ଭାରତର ଗୌରବ ପ୍ରତିଷ୍ଠା କରିବାପାଇଁ ସେ ଚିନ୍ତାମୂଳକ ଓ ଐତିହାସିକ ଆଲୋଚନା କମ୍ କରି ନାହାନ୍ତି । ଭାରତର ଗୌରବୋଜ୍ଜ୍ୱଳ ଚିତ୍ର ଅଙ୍କନ କରିବାକୁ ଯାଇ ସେ ଲେଖିଛନ୍ତି,

ଏହି କି ସେ ସୁମନୋଜ୍ଞ ଆଶା ସରୋବର
ଯାର ଜ୍ଞାନାମୃତ ପାନେ କୃତାର୍ଥ ଧରଣୀ

ସରୋବରରୁ ଅମୃତ ପାନ କଲେ ପିପାସା ଯେପରି ଦୂରୀଭୂତ ହୁଏ, ଆଶାବାଦୀ ଭାରତୀୟ ପୂଜ୍ୟ ଆର୍ଯ୍ୟଋଷିମାନଙ୍କଠାରୁ ସେହି ମନ୍ତ୍ରମୟ ଦୀକ୍ଷା ଗ୍ରହଣକରି ସମଗ୍ର ମାନବ ଜାତି କୃତାର୍ଥ ହୋଇଥିଲା ।

ଆଶାବାଦ ଓ ବିଶ୍ୱାସବାଦର ନିକଟ ସମ୍ପର୍କ ଅନ୍ୟତ୍ର ଉଲ୍ଲିଖିତ । ବିଶ୍ୱାସ ସମସ୍ତ ଉନ୍ନତିର ମୂଳ । ବେଦାନ୍ତ ସାର ନାମକ ଭାରତବିଖ୍ୟାତ ଦର୍ଶନ ଗ୍ରନ୍ଥରେ ଲେଖାଅଛି, "ଗୁରୁ ବେଦାନ୍ତ ବାକ୍ୟେଷୁ ବିଶ୍ୱାସଃ ଶ୍ରଦ୍ଧା" ଅର୍ଥାତ୍ ଗୁରୁ ଓ ବେଦାନ୍ତ ବାକ୍ୟରେ ବିଶ୍ୱାସ ହେଉଛି ଶ୍ରଦ୍ଧା । ତେଣୁ ଶ୍ରଦ୍ଧା ଓ ବିଶ୍ୱାସ ମଧ୍ୟରେ ଅର୍ଥଗତ ସାମ୍ୟ ପୂରି ପୂରି ରହିଛି । ବୃହଦାରଣ୍ୟକୋପନିଷଦ୍‌ରେ ନିର୍ଦ୍ଦେଶ ଦିଆଯାଇଛି "ଶ୍ରଦ୍ଧସ୍ୱ ବିଜିଜ୍ଞାସସ୍ୱ" । ଉନ୍ନତିର ପ୍ରଥମ ସୋପାନ ହେଉଛି ଶ୍ରଦ୍ଧା । ଭଗବଦ୍‌ଗୀତାରେ ଶ୍ରଦ୍ଧାର ମାହାତ୍ମ୍ୟ ନାନା-ଭାବରେ କୀର୍ତ୍ତିତ । ଉପନିଷଦ୍ ସାହିତ୍ୟର ମୁଖ ରୂପ ଈଶାବାସ୍ୟୋପନିଷଦ୍‌ରେ ମଧ୍ୟ କହାଯାଇଛି, "କୁର୍ବନ୍ନେବେହ କର୍ମାଣି ଜିଜୀବିଷେଚ୍ଛତଂ ସମାଃ ।" ଏଥିରେ ଶତବର୍ଷ ଜୀବନ ଛଳରେ ଆଶାବାଦର ମହତ୍ତ୍ୱ ଦ୍ୟୋତିତ ।

ଶେଷରେ ବକ୍ତବ୍ୟ, ମଧୁସୂଦନଙ୍କ ମତରେ ଜଗତ ଅମୃତମୟ, ତେଣୁ ସର୍ବଥା ଉପଭୋଗ୍ୟ । ଗଭୀର ବିଶ୍ୱାସରେ ବିଘ୍ନ ଚିନ୍ତା କରି ଲୋକ ଜ୍ଞାନ, ଭକ୍ତି ଓ କର୍ମ କ୍ଷେତ୍ରରେ ଅଗ୍ରସର ହେବା ଉଚିତ, ଏହାହିଁ କବିଙ୍କ ଆଶା ଓ ବିଶ୍ୱାସବାଦର ମୂଳ ତତ୍ତ୍ୱ ।

## କବିଙ୍କ ଅଧ୍ୟାତ୍ମବାଦ

କବି ମଧୁସୂଦନ ଉତ୍କଳରେ ଭକ୍ତକବି ନାମରେ ପରିଚିତ । ବୈଷ୍ଣବ ଭକ୍ତମାନଙ୍କ ପରି ସେ ରାଧାକୃଷ୍ଣ ଗୁଣ କୀର୍ତ୍ତନ ଓ ସେମାନଙ୍କର ଲୀଳା ବିଳାସ ବର୍ଣ୍ଣନ କରିନାହାନ୍ତି । ବାଲ୍ୟ କାଳରୁ ତାହାଙ୍କର ଗଭୀର ଧର୍ମଭାବର ସୂଚନା ମିଳିଥିଲା । ବିଶେଷତଃ ଛାତ୍ରାବସ୍ଥାରେ ପୁରୀରେ ଥିବା ବେଳେ ଯେଉଁ ଦିନ ଜଣେ ଜ୍ୟୋତିର୍ମୟ ପୁରୁଷଙ୍କୁ ସ୍ୱପ୍ନରେ ସେ ଦର୍ଶନ କଲେ, ସେହି ଦିନଟି ତାଙ୍କର ଭକ୍ତିପୂର୍ଣ୍ଣ ଜୀବନରେ ଚିରସ୍ମରଣୀୟ । ବ୍ରାହ୍ମ ଧର୍ମ ଗ୍ରହଣ କଲା ପରେ ତାଙ୍କର ହୃଦୟ ଅଧ୍ୟାତ୍ମବାଦର ବଳିଷ୍ଠ ଉତ୍ସରେ ପ୍ଲାବିତ ହେଲା । ବିଶ୍ୱ ସଂସାର ନବୀନ ରୂପରେ ତାଙ୍କୁ ପ୍ରତିଭାତ ହେଲା । ହୃଦୟରେ ଆଶା ଓ ବିଶ୍ୱାସ ସହ ଭକ୍ତି ଓ ବ୍ରହ୍ମବାଦର ମଧୁର ଝଙ୍କାର ଉତ୍ଥିତ ହେଲା । ସେ ଭକ୍ତିରେ ବିହ୍ୱଳ ହୋଇ ଭଗବାନଙ୍କୁ କେତେବେଳେ ପରମାରାଧ୍ୟ ଜନକ ରୂପେ, ତାହାଙ୍କ ଅପାର କରୁଣା ଓ ଶରଣବାତ୍ସଲ୍ୟରେ ବିମୁଗ୍ଧ ହୋଇ କେତେବେଳେ ବା ସ୍ନେହମୟୀ ଜନନୀରୂପେ ଆରାଧନା କରିବାକୁ ଲାଗିଲେ । ଜୀବନର ପ୍ରତ୍ୟେକ ସ୍ତରରେ ନିତ୍ୟ ନୂତନ ସ୍ପନ୍ଦନର ଅନୁଭୂତି ଲାଗି, ନୀରସ ଜୀବନରେ ଏକାନ୍ତ ସରସତାର ଜୀବନ୍ତ ବିକାଶ ପାଇଁ ଭଗବାନଙ୍କଠାରେ ସେ ଶରଣାପନ୍ନ ହେଲେ । ତାଙ୍କର

ଗ୍ରନ୍ଥାବଳୀ ପୁଂଖାନୁପୁଂଖ ଭାବେ ଆଲୋଚନା କଲେ ପାଠକମାନେ ଉପଲବ୍ଧି କରିବେ ଯେ, କବି ମଧୁସୂଦନଙ୍କ ଭକ୍ତି ଯଥାର୍ଥରେ ଅଧ୍ୟାତ୍ମବାଦ ଉପରେ ପ୍ରତିଷ୍ଠିତ । ଅଧ୍ୟାତ୍ମବାଦୀ ଦାର୍ଶନିକମାନେ ପରିଦୃଶ୍ୟମାନ ଜଡ଼ ଜଗତର ମୂଳ ରୂପେ ଗୋଟିଏ ଅପରିଚ୍ଛିନ୍ନ ଅଦୃଶ୍ୟ, ଅନନ୍ତ, ଅଜ୍ଞେୟ ଓ ମୌଳିକ ଶକ୍ତି ଯେପରି ନିର୍ଦ୍ଦେଶ କରନ୍ତି, ମଧୁସୂଦନ ଅବିକଳ ତାହାହିଁ କରିଛନ୍ତି । ତାଙ୍କ ଦୃଷ୍ଟିରେ ପ୍ରାଣହୀନତା ଓ ଜଡ଼ତାର ମୂଳରେ ମଧ୍ୟ ଅନନ୍ତ ସ୍ପନ୍ଦନ ପର୍ଯ୍ୟବସିତ । କି ସ୍ଥୂଳ କି ସୂକ୍ଷ୍ମ, କି ଭୀମ କି କାମମୀୟ, କି ବିକାଶ-ପ୍ରବଣ କି ନିର୍ଜୀବ, ସମସ୍ତେ ସେହି ଅଧ୍ୟାତ୍ମବାଦର ସନାତନ ପୀଠସ୍ଥଳୀ ସର୍ବବ୍ୟାପକ ବ୍ରହ୍ମ ଉପରେ ପ୍ରତିଷ୍ଠିତ ।

କୁସୁମାଞ୍ଜଳିର ବିଭିନ୍ନ କାବ୍ୟ କବିତା ଆଲୋଚନା କରି କବିଙ୍କ ଅଧ୍ୟାତ୍ମବାଦ ଉପସ୍ଥାପିତ କରିବା ପୂର୍ବରୁ "ସଙ୍ଗୀତ ମାଳା"ରୁ ଗୋଟିଏ ସଙ୍ଗୀତର କିୟଦଂଶ ଉଦ୍ଧାର କରିବା ସମୁଚିତ ମନେ କରେ । ଏହି ଉଦ୍ଧୃତିରୁ ସ୍ପଷ୍ଟ ପ୍ରମାଣିତ ହେବ ଯେ, ବ୍ରହ୍ମ ଭାବରେ କବିଙ୍କ ହୃଦୟ ପରିପ୍ଲୁତ ଥିଲା ।

ଭୂଲୋକେ ଦ୍ୟୁଲୋକେ ବ୍ରହ୍ମ
ସାଗରେ ପର୍ବତେ ବ୍ରହ୍ମ
ଜଳେ ବ୍ରହ୍ମ ସ୍ଥଳେ ବ୍ରହ୍ମ ବିଶ୍ୱ ବ୍ରହ୍ମ ନିକେତନ

× × × ×

ସର୍ବଶକ୍ତି ମୂଳାଧାର
ବ୍ରହ୍ମଜ୍ଞାନ ପାରାବାର

ଓଁ "ବ୍ରହ୍ମ ସର୍ବ ସାରତ୍‌ସାର, ବ୍ରହ୍ମ ବ୍ରହ୍ମାଣ୍ଡ ଜୀବନ।" କେବଳ ଏହି ଗୋଟିକ ନୁହେ, ଏହିପରି ଶତସଂଖ୍ୟକ ପଦ୍ୟ ମଧୁସୂଦନଙ୍କ ଗ୍ରନ୍ଥାବଳୀରୁ ତାଙ୍କର ବ୍ରହ୍ମବାଦତାର ପ୍ରମାଣ ଦେବା ଲାଗି ଉଦ୍ଧାର କରାଯାଇପାରେ। କିନ୍ତୁ କୁସୁମାଞ୍ଜଳି ଆମର ପ୍ରଧାନ ଆଲୋଚ୍ୟ ଗ୍ରନ୍ଥ ହୋଇଥିବାରୁ ତହିଁରେ ଏହି ତତ୍ତ୍ୱ କିପରି ଉପସ୍ଥାପିତ, ତାହାହିଁ ଦେଖିବାର କଥା।

ନବ ବସନ୍ତ ଭାବନା ଆଲୋଚନା କଲେ ବାସ୍ତବରେ ପାଠକର ମନରେ ନବ ଭାବନା ଜାତ ହୁଏ। ସାଧାରଣ ଦୃଷ୍ଟିରେ ପରିଦୃଶ୍ୟମାନ ବହିର୍ଜଗତ ଜଡ଼ବତ୍ ପ୍ରତୀୟମାନ ହେଲେହେଁ ଅଧ୍ୟାତ୍ମବାଦୀ କବି ତହିଁରେ ପାଇଛନ୍ତି ଅନନ୍ତ ପ୍ରାଣ, ଅନନ୍ତ ଆନନ୍ଦ ଓ ଅନନ୍ତ ପ୍ରେମର ସନ୍ଧାନ। ବସନ୍ତ ଋତୁର ଆଗମନରେ ଶୁଷ୍କ ରୁକ୍ଷ ଧରଣୀ ନୂତନ ପରିଚ୍ଛଦରେ ଭୂଷିତ ହେଲା। ପଲ୍ଲବିତ ତରୁଲତା ଧରାଧାମରେ ସୌନ୍ଦର୍ଯ୍ୟର ଗୋଟାଏ ବିରାଟ ଶାଳଶାଳା ଖୋଲିଦେଲେ। ପଶୁ ପକ୍ଷୀମାନଙ୍କର ମଧୁର ଶବ୍ଦରେ ବନ ନଗରୀ ପ୍ରତିଧ୍ୱନିତ ହୋଇ ଉଠିଲା। ଜଡ଼ ଧରଣୀ ପକ୍ଷରେ ଏ ଅଦ୍ଭୁତ ପରିବର୍ତ୍ତନ କେବେ କି ସମ୍ଭବ ହୋଇପାରେ ? ଏହା ବାସ୍ତବରେ ସନାତନ ଜୀବନର ସ୍ପନ୍ଦନ ମାତ୍ର। ଅଧ୍ୟାତ୍ମବାଦୀ ମଧୁସୂଦନଙ୍କୁ ଯେଉଁ ରୂପରେ ଧରଣୀର ଏ ନବୀନ ରୂପ ସମ୍ପଦ ପରିଦୃଷ୍ଟ ହେଲା, ସେ ଅତି ସୁନ୍ଦର ଭାବରେ ତାହା ଫୁଟାଇ ପାରିଛନ୍ତି ଏବଂ ଲେଖିଛନ୍ତି—

ପ୍ରାଣ ମନ୍ଦାକିନୀ ପ୍ରାୟ
ମୃତ ଜଡ଼ ପାଷାଣେ,
ସଂଚରଇ ନବ ପୁଲକ
ଅଦଭୁତ ବିଧାନେ।

ନବୀନ ଯୌବନ ପ୍ରବାହ
        କୋଟି କୋଟି ଆକାରେ,
ବିକାଶଇ ଶୋଭା ମୂରତି
        ଏହି ଜଡ଼ ସଂସାରେ ।

ଏଥିରେ କବିଙ୍କ ଅନୁଭୂତି ନିଃସନ୍ଦେହ ଭାବରେ ପାଠକ ଉପଲବ୍ଧି କରିବାକୁ ସମର୍ଥ ହୁଏ ।

କେବଳ ଏତିକି ନୁହେ, ସାଂସାରିକ ମୋହ ତାହାର ସର୍ବ-ଗ୍ରାସୀ ଶକ୍ତି ବଳରେ ମାନବକୁ ଯେତେବେଳେ ପ୍ରଭାବିତ କରେ, ସେତେବେଳେ ଚିତ୍ତର ଉତ୍ଫୁଲ୍ଲତା, ହୃଦୟର କୋମଳତା ଓ ପ୍ରାଣର ସରସତା ଏକାବେଳକେ ଅନ୍ତର୍ହିତ ହୁଏ । ଏ ଅବସ୍ଥାରେ ପତିତ ହେଲେ ମାନବର ଜୀବନ ଦୁଃଖମୟ ହୁଏ । ଅଭାବ ଓ ଅଭିଯୋଗ, ଅସୁବିଧା ଓ ଅନାଟନ ପ୍ରଭୃତିର ନିଗଡ ବନ୍ଧନରେ ମାନବ ଆବଦ୍ଧ ହୁଏ । ସେତେବେଳେ ଅଶ୍ରୁପାତହିଁ ଜୀବନର ଚିରସଙ୍ଗୀ ହୁଏ । କିନ୍ତୁ ମୋହ ଯବନିକା ଉତ୍ତୋଳିତ ହେବା ପରେ ମାନବ ଅବଧାରଣ କରେ ଯେ, ଜଗତର ପ୍ରତ୍ୟେକ ବସ୍ତୁରେ ସଚ୍ଚିଦାନନ୍ଦ-ମୟ ଭଗବାନ୍ ବିରାଜିତ । ଅଜ୍ଞାନ ଅନ୍ଧକାର ଦୂରୀଭୂତ ହେଲେ ମନରେ ଅନିବାର୍ଯ୍ୟ ଭାବରେ ପବିତ୍ରତା ଉଦ୍ରିକ୍ତ ହୁଏ । ହୃଦୟରେ ସ୍ୱତଃ ଏହି ବାଣୀ ସ୍ଫୂର୍ତ୍ତି ହୁଏ—

ପ୍ରେୟ ପଥ ତେଜି ଶ୍ରେୟର
        ପଥ ଆଶ୍ରୟ କର
ବ୍ରହ୍ମପଦେ ପ୍ରାଣ ବିସର୍ଜି
        ନବ ଜୀବନ ଧର ।

ବାସ୍ତବିକ୍ ବ୍ରହ୍ମର୍ଷି ମଧୁସୂଦନ ନିଜ ଗମ୍ଭୀର ଅନୁଭୂତି ଏଥିରେ ଅଳ୍ପ ସୁଦକ୍ଷ ଭାବରେ ପ୍ରକାଶ କରିନାହାନ୍ତି ।

'ଏ ସୃଷ୍ଟି ଅମୃତ ମୟ ହେ' ମଧୁ କବିଙ୍କ ଅଧ୍ୟାତ୍ମ ବାଦିତାର ପରିଚାୟକ । ଅକୂଳ ଅତଳ ମହା ପାରାବାର, ଅବନୀ ଲକ୍ଷ୍ମୀର ଜନନୀ ସିନ୍ଧୁ, ଅମ୍ବରଚୁମ୍ବିତ ମହା ମହୀଧର ହିମାଳୟ, ଦିଗନ୍ତ ବିସ୍ତାରୀ ନିତ୍ୟଗତିଶୀଳ ପବନ, ତରୁଲତାଶୂନ୍ୟ ବାଲୁକାମୟ ଶୁଷ୍କ ତପ୍ତ ମରୁଭୂମି, ଫଳପୁଷ୍ପ ପଲ୍ଲବ ବିମଣ୍ଡିତ ତରୁଲତା, କୋମଳ ଶ୍ୟାମଳ ଶସ୍ୟପୂର୍ଣ୍ଣ କ୍ଷେତ୍ର, କଳକଳ ନାଦିନୀ ସ୍ୱଚ୍ଛନୀର ତଟିନୀ, ଭାନୁ ଅଭ୍ୟୁଦୟ ସୂଚୀ ଉଷାରାଣୀ, ସ୍ନିଗ୍ଧ ଛାୟାମୟୀ ସନ୍ଧ୍ୟା, ଆଲୋକ ବିଳାସୀ ଦିବସ, ବସନ୍ତାଦି ଋତୁ ଓ ଶେଷରେ ମାନବ ସମାଜର ପ୍ରତ୍ୟେକ ଅଂଗ ତଥା ସୁମହତ୍ତ୍ୱ ଗୁଣ—ଏ ସମସ୍ତଙ୍କ ମଧ୍ୟରେ ସୂକ୍ଷ୍ମଦର୍ଶୀ କବି ଅମୃତମୟ ଭଗବାନଙ୍କର ପ୍ରକାଶ ଦେଖି ପାରିଛନ୍ତି । ଉପନିଷଦ୍‌ରେ ଋଷିଗଣ ଯେପରି ମନ୍ଦ୍ର ନାଦରେ ବ୍ରହ୍ମୋପଦେଶ ଦେଇଛନ୍ତି, ସେହିପରି ବଜ୍ରଗମ୍ଭୀର ସ୍ୱରରେ ବ୍ରହ୍ମର୍ଷି ମଧୁସୂଦନ ପ୍ରଶ୍ନର କରିଛନ୍ତି:—

ଜାଗ ନରନାରୀ ଅମୃତ ସନ୍ତତି
ପିଅ ସେ ଅମୃତ ପୟହେ
ପିଇ ସେ ଅମୃତ ଦିବସ ଶର୍ବରୀ
ଗାଅ ଅମୃତର ଜୟ ହେ ।

ଭଗବଦ୍ ଗୀତାର "ଯେନ ସର୍ବମିଦଂ ତତମ୍ ।" ବା ବ୍ରହ୍ମଙ୍କର ସର୍ବବ୍ୟାପକତା ଏହି କବିତାର ବିଷୟବସ୍ତୁ ଓ ଅଧ୍ୟାତ୍ମ-ବାଦୀ ପକ୍ଷରେହିଁ ଏହି ଦୃଷ୍ଟିକୋଣ ସମ୍ଭବ ।

କାୟମନୋବାକ୍ୟରେ କବିଙ୍କର ପରମ ଆଦର୍ଶ ଥିଲା, ବ୍ରହ୍ମ-ଚିନ୍ତା, ବ୍ରହ୍ମଚର୍ଯ୍ୟ ଓ ବ୍ରହ୍ମବାଦର ପ୍ରଚାର । କାଳି ରାଜ୍ୟରେ 'ନବଯୁଗର ଅଭିଷେକ' ମହା ସମାରୋହରେ ସମ୍ପନ୍ନ କରି ସେ ନବଯୁଗର କବିଙ୍କ କଣ୍ଠରେ ଯେଉଁ ବାଣୀ ଫୁଟାଇଛନ୍ତି ତାହା ଉଲ୍ଲିଖିତ ଉକ୍ତିର ପୂର୍ଣ୍ଣ ସମର୍ଥନ କରେ । ସେ ଲେଖିଛନ୍ତି:—

ବ୍ରହ୍ମ-ସୁତ ବ୍ରହ୍ମ-ତନୟା
ନର-ନାରୀ ନିକର
କର ଏ ସମ୍ବାଦ ଘୋଷଣା
ସତ୍ୟ-ଶିବ-ସୁନ୍ଦର ।

ଅଧ୍ୟାତ୍ମବାଦର ମହନୀୟ ଆଦର୍ଶ ଏଥିରେ ପ୍ରତିଫଳିତ । ବ୍ୟକ୍ତି ବ୍ୟକ୍ତି ମଧ୍ୟରେ, ପରିବାର ପରିବାର ମଧ୍ୟରେ, ସମାଜ ସମାଜ ମଧ୍ୟରେ, ଜାତି ଜାତି ଓ ଧର୍ମ ଧର୍ମ ମଧ୍ୟରେ ଯେଉଁ ବୈଷମ୍ୟ ଦେଖାଯାଏ, ତାହାର ଅମୋଘ ମହୌଷଧ କବିଙ୍କର ବ୍ୟାପକ ବ୍ରହ୍ମବାଦରେ ବର୍ତ୍ତମାନ । ମାନବ ଯେତେବେଳେ ଅଧ୍ୟାତ୍ମପନ୍ଥା ଅନୁସରଣ କରି ବୁଝିବାକୁ ସମର୍ଥ ହେବ ଯେ ଜଗତର ପ୍ରତ୍ୟେକ ନରନାରୀ ସେହି ଏକମାତ୍ର ପରଂବ୍ରହ୍ମଙ୍କର ସନ୍ତାନ, ତାହାର ଲୋଭ ମୋହ, କ୍ରୋଧ ଦ୍ୱେଷ ସମୂଳେ ବିଲୁପ୍ତ ହେବ, ଅଦମ୍ୟ ଦେଶପ୍ରୀତି ଜାଗରିତ ହେବ, ସଂକୀର୍ଣ୍ଣତା ଦୂରୀଭୂତ ହେବ, ବିଶ୍ୱପ୍ରେମ ଫୁଟି ଉଠିବ । ସେହି ଅଖଣ୍ଡ ଅକ୍ଷୟ ଆଦର୍ଶ ଦିଗରେ ମନପ୍ରାଣ ପ୍ରଧାବିତ ହେବ । ସେତେବେଳେ କବିଙ୍କର ନିମ୍ନୋଦ୍ଧୃତ ଉକ୍ତି ଯଥାର୍ଥ ହେବାରେ ବୋଧହୁଏ ସନ୍ଦେହର ଅବକାଶ ରହିବ ନାହିଁ ।—

ଈଶ୍ୱରଙ୍କର ପ୍ରେମ ଆଲୋକ
ଦିଶ ଦିଗେ ପ୍ରକାଶୁ,

ବିଧାତାର ପୁଣ୍ୟ ଆନନ୍ଦ—
ସ୍ରୋତେ ଜଗତ ଭାସୁ ।

ଭକ୍ତକବି ଯେତେ ଖଣ୍ଡି କବିତା ଲେଖିଛନ୍ତି, 'ଋଷି ପ୍ରାଣେ ଦେବାବତରଣ' ହେଉଛନ୍ତି ସେ ସମସ୍ତର ମହୁଜ୍ଜମଣି । ଅନ୍ୟ କିଛି ନ ଲେଖି କବି ଯେବେ ଏହି ଖଣ୍ଡିକ କବିତା ଲେଖିଥାନ୍ତେ, ଉତ୍କଳ-ଭାରତୀଙ୍କର ବରପୁତ୍ରରୂପେ ଚିରକାଳ ସେ ସମ୍ମାନିତ ହେଉଥାନ୍ତେ । ଉଷା କାଳରେ ପୁଣ୍ୟତୋୟା ସରସ୍ୱତୀ ତୀରରେ ଜଣେ ଉଦାରମୂର୍ତ୍ତି, ଦୀର୍ଘକାୟ, ହେମଗୌର, ରମ୍ୟ କଳେବର, ପ୍ରଶସ୍ତ ଲଲାଟ ଯୁବକ ଧ୍ୟାନମଗ୍ନ ଥିବାବେଳେ ଅପୂର୍ବ ଜ୍ୟୋତିରେ ତାଙ୍କର ବଦନ ମଣ୍ଡଳ ଉଦ୍ଭାସିତ ହୋଇ ଉଠିଲା । ସେତିକି ବେଳେ—

ସହସା ଫୁଟଇ ଋଷି ଲୋଚନ କମଳ,
ଦେଖିଲେ ତହିଁ ଆହା କିବା ଜ୍ୟୋତି ସୁବିମଳ ।
ବାହ୍ୟ ଅଭ୍ୟନ୍ତର ଭେଦ ଏବେ ନାହିଁ ଆଉ
ଦଶି ଦିଶି ଏକ ଜ୍ୟୋତି ଦିଶେ ଦାଉ ଦାଉ ।
କ୍ଷିତି ଅପ୍ ମରୁତ୍ ବ୍ୟୋମ ତେଜ ଏକାକାର

ଋଷିଙ୍କ ଦୃଷ୍ଟିରେ ସେତେବେଳେ ଜଗତର ସମସ୍ତ ବୈଷମ୍ୟ ଓ ପାର୍ଥକ୍ୟ, ପ୍ରତ୍ୟେକ ବସ୍ତୁର ସ୍ୱତନ୍ତ୍ର ସତ୍ତା ଏକାବେଳକେ ଅନ୍ତର୍ହିତ । ବ୍ରହ୍ମାଣ୍ଡର ରନ୍ଧ୍ରେ ରନ୍ଧ୍ରେ ସେହି ସନାତନ ଶକ୍ତି କିପରି ପରିବ୍ୟାପ୍ତ, ତାହାହିଁ ଋଷିଙ୍କ ମନୋରାଜ୍ୟର ଏକମାତ୍ର ଦୃଶ୍ୟ । ସେତେବେଳେ ଆକାଶ, ବାୟୁ, ତେଜ, ଜଳ ଓ ପୃଥିବୀ, ଏହି ଭୂତପଞ୍ଚକର ସ୍ୱାତନ୍ତ୍ର୍ୟ ସଂପୂର୍ଣ୍ଣ ବିଲୁପ୍ତ, ସବୁ ଏକାକାର, ଏକ

ରୂପରେ ପର୍ଯ୍ୟବସିତ ଓ ଏକ ଭାବରେ ପରିଦୃଶ୍ୟମାନ । ସେତେବେଳେ—
କବିଙ୍କ ଭାଷାରେ—

କ୍ଷିତି ଅପ୍ ମରୁତ୍ ବ୍ୟୋମ ତେଜ ଏକାକାର
କରେ ଯନ୍ତ୍ର ରଷି ଆହା ! ଚିନ୍ମୟ ସଂସାର ।
ମୃତ ଜଡ଼ ଆଜ ଆହା ! କି ଅମୃତମୟ
ବ୍ରହ୍ମ ନିଃସ୍ୱସିତେ ପୂର୍ଣ୍ଣ ବ୍ରହ୍ମାଣ୍ଡ ହୃଦୟ ।

ଏଠାରେ ବିସ୍ମୃତ ହେବା ଉଚିତ ନୁହେ ଯେ କବି ଯେଉଁ ଧର୍ମର ମୋହନମନ୍ତ୍ରରେ ମୁଗ୍ଧ ହୋଇଥିଲେ, ତାହା କର୍ମକାଣ୍ଡ ଦୃଷ୍ଟିରୁ ହିନ୍ଦୁଧର୍ମଠାରୁ ଭିନ୍ନ ହେଲେ ମଧ୍ୟ ଜ୍ଞାନକାଣ୍ଡ ଦୃଷ୍ଟିରୁ ଅଭିନ୍ନ । ବେଦର ଶ୍ରେଷ୍ଠତତ୍ତ୍ୱ ଯେଉଁ ଉପନିଷଦ୍‌ରେ ପ୍ରକାଶିତ, ତାହା ଯଥାର୍ଥରେ କବିଙ୍କ ବ୍ରହ୍ମବାଦର ମୂଳବୀଜ । କବିଙ୍କ ନିଜ ଭାଷାରେ କହିବାକୁ ଗଲେ—

ସହସା ସହସ୍ର ବିନ୍ଦୁ୍ୟନ୍ମୁଖଃ ପରିଭବ ।
ଋଷିର ଅନ୍ତରେ ସ୍ଫୁରେ ମହାମୃତ ଛବ ।

ଏହି ମହାମୃତ ଛବର ଚିତ୍ରଣ ଯେଉଁରୂପେ କରାଯାଇଛି, ତାହା ଅକ୍ଷରଶଃ ଉପନିଷଦ୍‌ସମ୍ମତ ।

ପରିଶେଷରେ ବକ୍ତବ୍ୟ, ବ୍ରହ୍ମଙ୍କ ମଧୁସୂଦନ ଓଡ଼ିଆ-ଭକ୍ତି ସାହିତ୍ୟକୁ ନିଜର ଅମୂଲ୍ୟ ଦାନରେ ଚିର-ସମୃଦ୍ଧ କରି ଅଛନ୍ତି । ତାଙ୍କର କବିତାବଳୀର ଛନ୍ଦେ ଛନ୍ଦେ ଯେଉଁ ଅଧ୍ୟାତ୍ମବାଦ ପ୍ରକଟିତ, ତାହା ସର୍ବବିଧ ସଂକୀର୍ଣ୍ଣତା ଓ ସାଂପ୍ରଦାୟିକତାର ପରପାରରେ ଅବସ୍ଥିତ । 'ଋଷିପ୍ରାଣେ ଦେବାବତରଣ'ରେ ଯେଉଁ

ବ୍ରହ୍ମସ୍ତୁତି ପ୍ରକାଶ ପାଇଛନ୍ତି, ତାହା ଉପନିଷଦ୍‌ର ଅନୁସରଣରେ କବିଙ୍କ ନିଜ ସ୍ତୁତି କହିଲେ ଅତ୍ୟୁକ୍ତି ହେବ ନାହିଁ । ବିମଳ ଅନ୍ତରରେ, ପୂତ ପ୍ରାଣରେ ଓ ପବିତ୍ର ହୃଦୟରେ ସେ ଯେଉଁ ବ୍ରହ୍ମ ସତ୍ତା ଉପଲବ୍ଧି କରିଥିଲେ, ତାହା କବିତାର ଶେଷ ଅଂଶରେ ନିମ୍ନଲିଖିତ ଭାବେ ବର୍ଣ୍ଣିତ ।

> ଏକ ଅଦ୍ୱିତୀୟ ପ୍ରଭୁ ସର୍ବ ମୂଳାଧାର,
> ଏକ ମାତ୍ର ପରମାତ୍ମା ବ୍ରହ୍ମ ନିରାକାର ।

ଉତ୍କଳ ସାହିତ୍ୟରେ ବ୍ରହ୍ମବାଦର ପ୍ରତିଷ୍ଠା ଯଦ୍ୟପି ନୂତନ ନୁହେ, ତଥାପି ନବୀନ ଶୈଳୀରେ କବି ମଧୁସୂଦନ ତାହା କରିବାକୁ ଚେଷ୍ଟା କରିଛନ୍ତି । "ବ୍ରହ୍ମର୍ଷି" ଉପାଧିରେ ଗୌରବାନ୍ୱିତ ହେବାପାଇଁ ସେ ଯୋଗ୍ୟ ଅଧିକାରୀ ।

---

## କବିଙ୍କ ଭକ୍ତିମତ୍ତା

ଉତ୍କଳ ସାହିତ୍ୟରେ ଉପେନ୍ଦ୍ରଭଞ୍ଜ ଯେପରି କବି ସମ୍ରାଟ ନାମରେ ସମ୍ମାନିତ, ମଧୁସୂଦନ ସେହିପରି ଭକ୍ତକବି ନାମରେ ପରିଚିତ । ପ୍ରାଚୀନ ଉତ୍କଳ ସାହିତ୍ୟରେ ଯେଉଁ ଭକ୍ତିର ଲକ୍ଷଣ ଦେଖାଯାଏ ଏବଂ ବୈଷ୍ଣବ ଓ ଶାକ୍ତ ମାନେ ଯେଉଁପରି ବିଷ୍ଣୁ ଓ ଶକ୍ତିଙ୍କର ଉପାସନା କରନ୍ତି, ମଧୁସୂଦନଙ୍କର ଗ୍ରନ୍ଥାବଳୀରେ ସେପରି ବୈଷ୍ଣବ ଧର୍ମର ଅନୁରୂପ ମତବାଦ କିମ୍ବା କୌଣସି ନିର୍ଦ୍ଦିଷ୍ଟ ଦେବାଦେବୀଙ୍କ ଆରାଧନା ଦେଖିବାକୁ ମିଳେ ନାହିଁ । ତାଙ୍କ ଧର୍ମର, କର୍ମର ଓ ପ୍ରକୃତିର ମୂଳମନ୍ତ୍ର ହେଉଛନ୍ତି ଉପନିଷଦ୍ ପ୍ରତିପାଦିତ ପରଂବ୍ରହ୍ମ । ବୋଧହୁଏ ଏହି କାରଣରୁ

ସମାଲୋଚକ ସ୍ୱର୍ଗତ ପଣ୍ଡିତ ମୃତ୍ୟୁଞ୍ଜୟ ରଥ "ବ୍ରହ୍ମଜ୍ଞ ମଧୁସୂଦନ" ଆଖ୍ୟାରେ ତାଙ୍କୁ ଗୌରବାନ୍ୱିତ କରି ଯାଇଛନ୍ତି । 'ଛନ୍ଦମାଳା' ଓ 'ସଙ୍ଗୀତ ମାଳା' ରେ କବିଙ୍କର ବ୍ରହ୍ମଉପାସକତା ସୁନ୍ଦର ଭାବରେ ପ୍ରତିଫଳିତ । କୁସୁମାଞ୍ଜଳିରୁ ମଧ୍ୟ କବିଙ୍କ ଗଭୀର ଭକ୍ତିମତ୍ତାର ଢେର୍ ପରିଚୟ ମିଳେ ନାହିଁ ।

"ଶାଣ୍ଡିଲ୍ୟ ଭକ୍ତିସୂତ୍ର' ଅନୁସାରେ ଭଗବାନଙ୍କଠାରେ ପରମ ଅନୁରାଗହିଁ ଭକ୍ତି । 'ନାରଦ ଭକ୍ତିସୂତ୍ର' ରେ ପରମେଶ୍ୱରଙ୍କ-ଠାରେ ପରମ ପ୍ରେମ ଭକ୍ତି ରୂପରେ କଥିତ । ଉଭୟ ଭକ୍ତିସୂତ୍ର ଭକ୍ତି ସାହିତ୍ୟରେ ଯେପରି ପ୍ରାମାଣିକ, ଉଭୟର ମତବାଦ ସେହି-ପରି ଏକ ମୌଳିକ ତତ୍ତ୍ୱ ଉପରେ ପ୍ରତିଷ୍ଠିତ । ଉତ୍କଳ ସାହିତ୍ୟ ଗଗନର ବଳରାମ ଓ ଦୀନକୃଷ୍ଣ ପ୍ରମୁଖ ନକ୍ଷତ୍ରରୂପୀ ଭକ୍ତ କବିମାନେ ଭକ୍ତିର ଆଲୋକରେ ସାରାଦେଶକୁ ପ୍ଲାବିତ ଓ ଆଲୋ-କିତ କରି ଯାଇଛନ୍ତି । ଭକ୍ତିମତ୍ତା ଦୃଷ୍ଟିରୁ ମଧୁସୂଦନଙ୍କୁ ସେମାନଙ୍କ-ଠାରୁ ନିମ୍ନ ଆସନ ପ୍ରଦାନ କଲେ ବୋଧହୁଏ ସଙ୍ଗତିର ମାତ୍ରା ଭ୍ରଷ୍ଟ ନ ହୋଇ ରହି ପାରିବ ନାହିଁ । ଭଗବତ୍ ଗୀତାରେ ଲେଖା ଅଛି—

"ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହଃ"

ଏ ମତର ଲଂଘନ କରି ମଧୁସୂଦନ ଧର୍ମାନ୍ତର ଗ୍ରହଣ କରିଥିଲେ ହେଁ ବିଶୁଦ୍ଧ ଭକ୍ତି ତାଙ୍କର କମ୍ ଥିଲା ବୋଲି ଛାତିରେ ହାତଦେଇ କହିହେବନାହିଁ ।

ଭକ୍ତମାନଙ୍କୁ ତିନି ଶ୍ରେଣୀରେ ବିଭକ୍ତ କରାଯାଇପାରେ । ଯେଉଁମାନେ ପରର ଅନିଷ୍ଟ ସାଧନ ଉଦ୍ଦେଶ୍ୟରେ ଭଗବାନଙ୍କର

ଅନୁଗ୍ରହକାମୀ ହୁଅନ୍ତି, ସେମାନେ ତାମସ ଭକ୍ତ । ରାଜସଭକ୍ତମାନେ ସାଂସାରିକ ସୁଖସମ୍ଭୋଗ ତଥା ସେହିପରି ଅନ୍ୟ କୌଣସି ସ୍ୱାର୍ଥ ସାଧନ ଉଦ୍ଦେଶ୍ୟରେ ଭଗବାନଙ୍କର ଶରଣାପନ୍ନ ହୁଅନ୍ତି । ସାତ୍ତ୍ୱିକ ଭକ୍ତମାନେ ଭକ୍ତ ଜଗତରେ ହିମାଳୟ ପରି ଉନ୍ନତ, ମହୋଦଧି ପରି ଗମ୍ଭୀର, ଅନନ୍ତ ଗଗନ ପରି ଉଦାର । ସେମାନଙ୍କର ଏକମାତ୍ର ଧ୍ୟେୟ ବସ୍ତୁ ଭଗବତ୍ ଆଶ୍ରୟ ।

ନ ଧନଂ ନ ଜନଂ ନ ସୁନ୍ଦରୀଂ
କବିତାଂ ବା ଜଗଦୀଶ କାମୟେ ।
ମମ ଜନ୍ମନି ଜନ୍ମନୀଶ୍ୱରେ
ଭବତାଦ୍ ଭକ୍ତିରହୈତୁକୀ ତ୍ୱୟି ॥

ଅର୍ଥାତ୍ "ହେ ଭଗବାନ୍ ! ମୁଁ ଧନ, ଜନ, ସୁନ୍ଦରୀ ପ୍ରଭୃତି ସାଂସାରିକ ସୁଖସମ୍ପଦ ଚାହୁଁ ନାହିଁ । ଆପଣଙ୍କର ପଦାରବିନ୍ଦରେ ସବୁବେଳେ ମୋର ଚିତ୍ତ ରହୁ ବା ଆପଣଙ୍କଠାରେ ମୋର ଅହୈତୁକୀ ଭକ୍ତି ରହୁ, ଏହାହିଁ ମୋର ଏକମାତ୍ର କାମନା" । ଅବଶ୍ୟ ଏଠାରେ ଭଗବାନଙ୍କର ନିଜ ଉକ୍ତି ଗୀତାରୁ ଉଦ୍ଧାର କରି କୁହାଯାଇ ପାରେ । ଭକ୍ତିରେ ଉପହୃତ ପତ୍ର ପୁଷ୍ପ ଫଳ, ଜଳ ପ୍ରଭୃତି ମଧ୍ୟ ଭଗବାନ୍ ଗ୍ରହଣ କରନ୍ତି ଏବଂ ସେହି କାରଣରୁ ବୋଧହୁଏ ବିଖ୍ୟାତ ଭକ୍ତ କବି ଦୀନକୃଷ୍ଣ ସାତ୍ତ୍ୱିକ ଭାବରେ ଭଗବାନଙ୍କୁ "କମ୍ପା ନ କର ଚରଣ ପଦ୍ମ କୁସୁମ ଲିଭ" କହିବା ସଙ୍ଗେ ସଙ୍ଗେ ବିଶ୍ୱବାସୀଙ୍କୁ ଉପଦେଶ ଦେଇଛନ୍ତି—

କୃଷ୍ଣକାର୍ଯ୍ୟେ ତତପର ହୋଇବ
କୃଷ୍ଣ ପାଇଁ ଭଲ ଦ୍ରବ୍ୟ ଥୋଇବ

କବି ମଧୁସୂଦନ କୌଣସିଠାରେ ସବ ପୂଜ୍ୟାଦ ଭଗବାନଙ୍କର ସମପଣୀୟ ରୂପେ ନିର୍ଦ୍ଦେଶ କରି ନାହାନ୍ତି । ତାଙ୍କର ଭକ୍ତି ସ୍ୱାଭାବିକୀ ତଥା ରାଜସୀ । 'ସ୍ତବ' କବିତାରେ ସ୍ୱାଭାବିକତାର ପରାକାଷ୍ଠା ଓ ଅହୈତୁକୀ ଭକ୍ତିର ନିଦର୍ଶନ ଦେଖିବାକୁ ମିଳେ । ଭକ୍ତିପୂର୍ଣ୍ଣ ହୃଦୟରେ ସେ ଗାଇଛନ୍ତି—

ଦିଅ ଭକ୍ତି ପ୍ରଭୁ ହୃଦୟେ ମୋହର<br>
ସ୍ୱଗୀୟ ନିତ୍ୟ ତହିଁରେ<br>
ମର୍ତ୍ତ୍ୟ ପଥେ ରହି ଭୂମିର ଆଶାରେ<br>
ଯାଉ ମୋ ଦିନ ମହୀରେ ।

ଅନ୍ୟ ସ୍ଥାନରେ କବିଙ୍କର ବଳବତୀ ଇଚ୍ଛା ଭାରତୀୟ ଅତୀତ ଗୌରବର ଆଲୋକ ସ୍ତମ୍ଭ 'ବେଦ' ଓ ତାହାର ଜନ୍ମପୀଠ ଦେଖିବା ପାଇଁ ଜାତ ହୋଇଛି । ତେଣୁ ବିଶ୍ୱ ଜନନୀଙ୍କୁ ସମ୍ବୋଧନ କରି ସେ କହୁଛନ୍ତି ।

ଫେଡ଼ି ଅତୀତର ଦ୍ୱାର,<br>
ଆଦିମ ଆର୍ଯ୍ୟ ସଂସାର<br>
ତୋ ଆଦିମ ଲୀଳାଭୂମି ଦେଖାଅ ମା' ଆଣି,<br>
ଦେଖୁ ସେହି ପୁଣ୍ୟାଲେଖ୍ୟ ଏ ପ୍ରାଣ ବଖାଣି ।

ସଂକ୍ଷେପରେ କହିବାକୁ ଗଲେ ବ୍ରାହ୍ମଧର୍ମର ଉପାସ୍ୟ ବ୍ରହ୍ମଙ୍କଠାରେ କବିଙ୍କର ଥିଲା ଅଚଳା ଭକ୍ତି । ଭକ୍ତିବିହ୍ୱଳ ହୋଇ କେଉଁଠାରେ ସେହି ପରମ ଆରାଧ୍ୟ ବ୍ରହ୍ମଙ୍କୁ ବିଭୁରୂପରେ, କେଉଁଠାରେ ମହେଶ୍ୱର ରୂପରେ, କେଉଁଠାରେ ପରମେଶ୍ୱର

ରୂପରେ ଓ କେଉଁଠାରେ କୋମଳହୃଦୟା, ସଂତାନ-ବତ୍ସଳା ଜନନୀ ରୂପରେ ମଧ୍ୟ ତାଙ୍କୁ ସମ୍ବୋଧନ କରି ଶରଣାର୍ଥୀ ହୋଇଛନ୍ତି ।

"ଆତ୍ମସମର୍ପଣ କବିତା ଖଣ୍ଡିକ କବିଙ୍କ ଗଭୀର ଭକ୍ତିର ଜ୍ୱଳନ୍ତ ଦୃଷ୍ଟାନ୍ତ । କବି ଉତ୍କଳୀୟ ବୈଷ୍ଣବମାନଙ୍କ ପରି ଜଗନ୍ନାଥଙ୍କର ମହିମା ସ୍ଥାପନ କରି ନାହାନ୍ତି । ଗୌଡ଼ୀୟ ଭକ୍ତମାନଙ୍କ ପରି ରାଧାଭାବରେ ଅନୁପ୍ରାଣିତ ହୋଇ ଭଗବାନଙ୍କଠାରେ ଆତ୍ମା ସମର୍ପଣ କରିନାହାନ୍ତି । ତାଙ୍କ ଜୀବନୀ ଆଲୋଚନା କଲେ ଜଣାଯିବ, ବାଲ୍ୟାବସ୍ଥାରୁ ମଧ୍ୟ ସେ ଧର୍ମପ୍ରାଣ ଥିଲେ । ପୁରୀରେ ଅଧ୍ୟୟନ କରୁଥିବା ବେଳେ ଯେଉଁଦିନ ସ୍ୱପ୍ନରେ ସେ ଜ୍ୟୋତିର୍ମୟ ପୁରୁଷଙ୍କୁ ଦର୍ଶନ କଲେ, ସେହି ଦିନଠାରୁ ତାଙ୍କର ଧର୍ମପ୍ରାଣତା ଓ ଭକ୍ତିମତ୍ତା ଉତ୍ତରୋତ୍ତର ବୃଦ୍ଧି ଲାଭ କଲା । ଘଟଣାଚକ୍ରରେ ବ୍ରାହ୍ମଧର୍ମ ଗ୍ରହଣ କଲାପରେ ତାଙ୍କର ନୈସର୍ଗିକ ଭକ୍ତିର ବିକାଶ ପାଇଁ ଉନ୍ମୁକ୍ତ କ୍ଷେତ୍ର ମିଳିଗଲା । ସେହି ସମୟରୁ ଉପନିଷଦର ବ୍ରହ୍ମବାଦ ଉପରେ ପ୍ରତିଷ୍ଠିତ ବ୍ରାହ୍ମଧର୍ମର ସିଦ୍ଧାନ୍ତ ଅନୁଯାୟୀ ବ୍ରହ୍ମର ଅନୁଶୀଳନ କରିବାକୁ ଲାଗିଲେ । ସେହି ସମୟରୁ ସେ ବିଶ୍ୱର କି ଜଡ଼, କି ଜୀବନ୍ତ ସକଳ ବସ୍ତୁରେ ବିଶ୍ୱ ବ୍ୟାପକ ବ୍ରହ୍ମର ସତ୍ତା ଉପଲବ୍ଧି କଲେ । କାୟମନୋବାକ୍ୟରେ ସେହି ବ୍ରହ୍ମଠାରେ ଆତ୍ମସମର୍ପଣ କରି ବିଶ୍ୱବାସୀଙ୍କୁ ବ୍ରହ୍ମ ଉପାସନା କରିବାପାଇଁ ଉଦ୍‌ବୋଧନ ଦେବାରେ ପ୍ରବୃତ୍ତ ହେଲେ । ବୈଷ୍ଣବ କବିମାନଙ୍କ ପରି ସେ ନିଜକୁ ଭଗବାନଙ୍କଠାରୁ ପୃଥକ ମନେ କରି ନାହାନ୍ତି । ବିଶ୍ୱବିଖ୍ୟାତ ଦାର୍ଶନିକ ଶଙ୍କରାଚାର୍ଯ୍ୟଙ୍କ ପ୍ରତିଷ୍ଠିତ ଅଦ୍ୱୈତବାଦର ଅନୁରୂପ ସେ ନିଜକୁ ବ୍ରହ୍ମଠାରୁ ଅଭିନ୍ନ ମନେ କରୁଥିଲେ ।

'ସଙ୍ଗୀତମାଳା'ର ଅନେକ ସଙ୍ଗୀତରେ ଏହି ତତ୍ତ୍ୱ ପ୍ରକାଶ ପାଇଛି । ବ୍ରହ୍ମ ଅନନ୍ତ ହେଲେହେଁ ତାଙ୍କର ସତ୍ତା ସକଳବସ୍ତୁରେ ବିଦ୍ୟମାନ । ସେ ସକଳ ଜ୍ଞାନର ମୂଳପିଣ୍ଡ ଓ ତାହାଙ୍କର ଅଶେଷ କୃପାରେହିଁ ଜଗତର ସ୍ଥିତି ସମ୍ଭବ । ବ୍ରହ୍ମଙ୍କୁ ସଂସାରର ମୂଳ ରୂପେ ଗ୍ରହଣ କରି କବି ଗାଇଛନ୍ତି—

ମୁହିଁ କ୍ଷୁଦ୍ର ଊର୍ମି ତୁମ୍ଭେ ମହାସିନ୍ଧୁ
ଊର୍ମି ସିନ୍ଧୁ ଏକାକାର
ଅନନ୍ତ ମଙ୍ଗଳ ସଂକଳ୍ପ ସମ୍ଭୂତ
ମୁହିଁ ତୁମ୍ଭ ମହିମାର ।

ଏବଂ ଏହା ପୂର୍ବରୁ ସେ କହିବାକୁ ଭୁଲିନାହାନ୍ତି:—

ତୁମ୍ଭେ ପରିପୂର୍ଣ୍ଣ ଆନନ୍ଦ ସ୍ୱରୂପ
ମୁଁ ସେ ଆନନ୍ଦ ସନ୍ତାନ ।

ଏଥିରେ ଏକାଧାରରେ ଭକ୍ତର ପରାକାଷ୍ଠା, ବିଶ୍ୱପିତାଙ୍କର ପରମ ସନ୍ତାନବାତ୍ସଲ୍ୟ ଓ ତତ୍ତ୍ୱସହ କବିଙ୍କ ସସୀମତା ଓ ଲଘୁତ୍ୱ ପ୍ରକାଶ ପାଇଛି । ଏ କଥା ଚିନ୍ତାକଲାବେଳେ ଭକ୍ତର ପ୍ରଖର ଉଚ୍ଛ୍ୱାସରେ ସେ ଆତ୍ମହରା ହୋଇ ଯାଇଛନ୍ତି । ମେଘଦୂତର ପ୍ରେମପାଗଳ ବିରହୀ ଯକ୍ଷ ଯେପରି ମେଘକୁ 'କେଉଁଠାରେ'ତୁ' କେଉଁଠାରେ 'ତୁମେ' ବୋଲି ସମ୍ବୋଧନ କରିଥିବାର ଦେଖାଯାଏ ସେପରି ଭକ୍ତକବି ମଧୁସୂଦନ ହୃଦୟରେ ଭକ୍ତି ସ୍ରୋତର ପ୍ରାବଲ୍ୟ ହେତୁ ନିଃସଙ୍କୋ-ଚରେ ତାଙ୍କର ଅମୃତମୟ ଓ ଅନନ୍ତ ବିଶ୍ୱପିତାଙ୍କୁ 'ଜନନୀ' ରୂପେ ସମ୍ବୋଧନ କରି ପକାଇଛନ୍ତି ।

ମୁହିଁ କ୍ଷୁଦ୍ର ଶିଶୁ ତୁ ପ୍ରାଣ ଜନନୀ
ଅଚ୍ଛେଦ୍ୟ ନାଡୀବନ୍ଧନ

ତୋ ପ୍ରେମ ନୟନ ନିରୁପମ ସ୍ନେହ
ଅନାଇଛୁ ଅନୁକ୍ଷଣ

ଏହି ଉକ୍ତିରେ 'ତୁ'ଓ ଏହା ପୂର୍ବବର୍ତ୍ତୀ ଉକ୍ତିରେ ତୁମ୍ଭ କବିଙ୍କ ତନ୍ମୟତା ମାତ୍ର ପ୍ରମାଣିତ କରୁଛି ।

ଆତ୍ମର ମଧ ଭକ୍ତିର ପ୍ରଖର ସ୍ରୋତରେ ହୃଦୟ ଯେତେବେଳେ ପ୍ଲାବିତ ହୋଇଯାଏ, ଭକ୍ତ ଯେତେ ଅହୈତୁକୀ ଉପାସନା କରୁଥିଲେହେଁ ଅତର୍କିତ ଭାବରେ ପରମ କାରୁଣିକ ଆରାଧ୍ୟ ଦେବଙ୍କଠାରେ ନିଜର ଦୁଃଖ ପ୍ରକାଶ ନକରି ରହିପାରେ ନାହିଁ । କୃପାସିନ୍ଧୁ ବଳରାମଦାସଙ୍କ ଭାବସମୁଦ୍ର ତାଙ୍କ ଭକ୍ତି ବିହ୍ୱଳତାର ପରିଚାୟକ । ରଥଯାତ୍ରା ସମୟରେ ଭକ୍ତ ବଳରାମ ଅପମାନିତ ହୋଇଥିବାରୁ ଜଗନ୍ନାଥଙ୍କୁ ଜଣାଇଥିଲେ—

ହରି ହୋ ! କେତେଲୋକ ଥିଲେ ରଥରେ ବସି
ମୋତେ ଘଉଡ଼ ଦେଲୁ ଗଳା ଅସି
ସମସ୍ତ ଲୋକେ କଲେ ଉପହାସ
ଦାସ ରହିଅ ତୋ ନୁହଇ ଦାସ
× × × ×
ହା'ବଡ଼ା ମାରି ସେ ଦେଲା ଘଉଡ଼
ବଳରାମର ଯେ ଭାଙ୍ଗିଲା ଯୋଡ଼ ।

ମାତାଙ୍କ ନିକଟରେ ଅଳି କରି ବାଳକ ଯେପରି ନିଜର ସମସ୍ତ ଦୁଃଖ ଜ୍ଞାପନ କରିଦିଏ, ମଧୁସୂଦନ ସେହିମଚ ଶିଶୁସୁଲଭ ହୃଦୟରେ ବିଶ୍ୱପିତାଙ୍କ ସମୀପରେ ଆତ୍ମସମର୍ପଣ କରି କହିଥିଲେ—

ଅର୍ପଇ ଆନନ୍ଦେ ଘେନ ମହାପ୍ରଭୁ
ଘେନ ଏ ଦୁଃଖୀର ଅଳି ।

"ଏ ସୃଷ୍ଟି ଅମୃତମୟହେ" ରେ କବି ଭକ୍ତିର ମହାତ୍ମ୍ୟ କୀର୍ତ୍ତିତ କରି ଅଛନ୍ତି । ଜଗତର ବିଭିନ୍ନ ଭୌତିକ ତଥା ମାନସିକ ବସ୍ତୁର ମଧ୍ୟଦେଇ ଭଗବାନଙ୍କ ପ୍ରକାଶ କପରି ହୋଇଛି, ତାହା ବର୍ଣ୍ଣନା କରି କହୁଛନ୍ତି :—

ଶ୍ରଦ୍ଧା ଭକ୍ତି ପ୍ରୀତି ଦୟା ଶୁଭାକାଂକ୍ଷା
ପୁଣ୍ୟ ବିଶ୍ୱାସ ବିନୟ ହେ
ଏ ସକଳ ମଧ୍ୟେ ନିବସନ୍ତି ପ୍ରଭୁ
ଶାଶ୍ୱତ ଅମୃତମୟ ହେ
ପରମ ଜନକ ପରମ ଜନନୀ
ତାଙ୍କ ପଦେ ବିଶ୍ରାମ ହେ
ସେହି ବିଶ୍ରାମ ଆନନ୍ଦାମୃତର
ହୁଅ ଶିଶୁ ସନ୍ତାନଚୟ ହେ ।

'ଉଦ୍‌ବୋଧନ'ରେ କବିଙ୍କ ଭକ୍ତିର ଯେଉଁ ବିଭାବ ପ୍ରକାଶ ପାଇଛି, ତହିଁରୁ ବିଭୁ ପ୍ରାପ୍ତି ଲାଗି ତାଙ୍କର ବଳବତୀ ଇଚ୍ଛାର ସ୍ପଷ୍ଟ ସୂଚନା ମିଳେ । 'ଆତ୍ମ ସମର୍ପଣ'ରେ ସେ କହୁଛନ୍ତି –

ମନ ଲୋଚନର ଜ୍ଞାନାଲୋକ ତୁମ୍ଭେ
ସର୍ବ ଦର୍ଶନ ନିଦାନ

ଏବଂ 'ଉଦ୍‌ବୋଧନ'ରେ ବ୍ୟାକୁଳତାର କାରଣ ନିର୍ଦ୍ଦେଶ କରିବାକୁ ଯାଇ ସେ ଗାଇଛନ୍ତି—

ଆଜି ବନ୍ଧୁ ଧନ ଅନ୍ତେ ବ୍ୟାକୁଳ ଅନ୍ତରେ
ନିରାଶାର ଆଶା ତୋର ଅଭୟ ପଦ୍ମରେ
ଅନୁତାପ ଅଶ୍ରୁଜଳ
ତାକି ହେବ ନିରମଳ
ଅଭିନବ ଜ୍ୟୋତି ତବ ପଦ ପରଶରେ
ଏ ପ୍ରାଣ ଲଭିବ ବୋଲି ଡାକଇ କାତରେ ॥

କବିଙ୍କ ଜୀବନ ଦୁର୍ବହ ହୋଇ ଉଠିଛି, କଳୁଷ ସଂହତି ତାଙ୍କ ପ୍ରାଣ ଉପରେ ଗୁରୁ ସ୍ତୂପ ଦେଇଛି । ସମଗ୍ର ସଂସାର ତାଙ୍କୁ ଦେଖାଯାଉଛି ଭୟଙ୍କର । ମନ ମଧ୍ୟରୁ ସରସତା ଓ ପ୍ରଫୁଲ୍ଲତା ମଧ୍ୟ ଅନ୍ତର୍ହିତ ହୋଇଯାଇଛି । ଏପରି ଅବସ୍ଥାରେ କବି ବ୍ୟାକୁଳ ଅନ୍ତରରେ ମଧୁର କଣ୍ଠରେ ସେହି କରୁଣାମୟୀଙ୍କୁ ଡାକୁଛନ୍ତି । ଗୀତାରେ ଅଛି "ଚତୁର୍ବିଧା ଭଜନ୍ତେ ମାଂ ଜନାଃ ସୁକୃତିନୋର୍ଜ୍ଜୁନ, ଆର୍ତ୍ତୋଜିଜ୍ଞାସୁରର୍ଥାର୍ଥୀ ଜ୍ଞାନୀଚ ଭରତର୍ଷଭ" ଅର୍ଥାତ୍ ଆର୍ତ୍ତ ଜିଜ୍ଞାସୁ, ଅର୍ଥାର୍ଥୀ ଓ ଜ୍ଞାନୀ—ଏହି ଚାରି ଶ୍ରେଣୀର ଲୋକ ଭଗବାନଙ୍କୁ ଉପାସନା କରନ୍ତି । ଏଠାରେ କବି ଆର୍ତ୍ତ ଭାବରେ ତାଙ୍କୁ ଭଜନା କରୁଛନ୍ତି । କିନ୍ତୁ ଲକ୍ଷ୍ୟ କେବଳ ସାଂସାରିକ ପାପ ତାପର ଦୂରୀକରଣ ନୁହେଁ, ଭଗବାନଙ୍କର ଜ୍ୟୋତି ଦର୍ଶନ ମଧ୍ୟ ତାହାର ଅଙ୍ଗୀଭୂତ । ଏହି ଜ୍ୟୋତି ଦର୍ଶନରେ

ଲଭିବ ବାଞ୍ଛିତ ଫଳ
ଏ ଚିତ୍ତ ହେବ ନିର୍ମଳ
ଭଜିବ ଭକତଭାବରେ ତୋର ଶ୍ରୀଚରଣ
ଦୟାକର ଦୟାମୟି ! ମୁଁହି ଅକିଞ୍ଚନ ॥

ଅଦ୍ୱୈତବାଦ ଅନୁସାରେ ଜୀବ ନିଜକୁ ବ୍ରହ୍ମଠାରୁ ଚରମ ଅବସ୍ଥାରେ ଅଭିନ୍ନ ମନେ କରୁଥିଲେହେଁ ଭକ୍ତିମୂଳକ ଦ୍ୱୈତ ତାତ୍ପର୍ଯ୍ୟରେ ନିଜର କ୍ଷୁଦ୍ରତା ପ୍ରତିପାଦନ କରିଛନ୍ତି ।

ଭଗବାନଙ୍କର ଦିବ୍ୟ ଜ୍ୟୋତି ଦର୍ଶନରେ କାହାର ମନ ପ୍ରାଣ ପୁଲକିତ ହୋଇ ନଉଠେ ? ପୁଣି ବିଶେଷତଃ ବ୍ରହ୍ମ ଶିରାରେ ଯାହାଙ୍କର ସୁଦୀର୍ଘ ଜୀବନ ଯାପିତ ହୋଇଥିଲା, ତାଙ୍କ ପକ୍ଷରେ ଏହି ମଧୁର ଅନୁଭୂତି ତ ଅତି ସ୍ୱାଭାବିକ । ଦିବ୍ୟଜ୍ୟୋତି ଦର୍ଶ-ନରେ ହୃଦୟ କପରି ଉତ୍‌ଫୁଲ୍ଲ ହୋଇଉଠେ, ଭକ୍ତିରେ ଶିର କପରି ବିନମ୍ର ହୋଇ ଯାଏ, ତାହା ବର୍ଣ୍ଣନା କରିବାରେ ମଧୁସୂଦନ ସୁଯୋଗ୍ୟ ଅଧିକାରୀ । 'ଆଶା' କବିତାରେ ପାନ୍ଥର ଦିବ୍ୟଜ୍ୟୋତି ଦର୍ଶନ ଛଳରେ ସେ ନିଜ ଅନ୍ତରର ବାଣୀ ବିଶ୍ୱବାସୀଙ୍କୁ ଶୁଣାଇ ଛନ୍ତି । ଲେଖିଛନ୍ତି—

ମହାଦେବୀ ଆବିର୍ଭାବେ ସ୍ଥାବର ଜଙ୍ଗମ
ପୁଲକେ ପୂରିତ
× × × ×
ଆନନ୍ଦେ ବିହ୍ୱଳ ପାନ୍ଥ ଭକ୍ତିପୁଲକିତ
ନମଇ ସମ୍ଭ୍ରମେ,
ଆନତ କରନ୍ତେ ଶିର ପ୍ରଭା ଲୋକାତୀତ
ନୟନେ ସଂଚରେ ।

ପାନ୍ଥ ଯେ କେବଳ ଭକ୍ତିପୁଲକିତ ହୋଇଥିଲା, ତାହା ନୁହେଁ ତହିଁରୁ ସେ ପାଇଥିଲା ଭକ୍ତି-ରାଜ୍ୟର ଗୋଟାଏ ମହତ୍ ଉପଦେଶ । ଯେଉଁ ସ୍ୱର୍ଗ-ତୋରଣ ତାହାର ଦୃଷ୍ଟିପଥାରୂଢ଼

ହେଲା, ତନ୍ମଧ୍ୟରେ ଭକ୍ତର ମହତ୍ତ୍ୱ ନିର୍ଦ୍ଦେଶକ ଏହି ଛନ୍ଦଟି ସ୍ୱର୍ଣ୍ଣ-ବର୍ଣ୍ଣାବଳୀରେ ଅଙ୍କିତ ହୋଇଥିଲା:—

ଭକ୍ତ-ପ୍ରୀତି-ସହଚରୀ— ଆଶା-ଅଧିଷ୍ଠିତ
ଏ ସ୍ୱର୍ଗ-ତୋରଣ ।

ସ୍ୱର୍ଗ ରାଜ୍ୟରେ, ଭଗବାନଙ୍କ ରାଜ୍ୟରେ, ନିତ୍ୟ ଆନନ୍ଦମୟ ଧାମରେ ପ୍ରବେଶ କରିବାକୁ ହେଲେ ଭକ୍ତିର ପରମ ଉପାଦେୟତା ଓ ମହୀୟସୀ ଶକ୍ତି, ଏଠାରେ କିମ୍ବ ବଳିଷ୍ଠ ଭାବରେ କବି ସ୍ଥାପିତ କରିନାହାନ୍ତି ।

'କୁସୁମାଞ୍ଜଳି' କବିଙ୍କ ଦାର୍ଶନିକ କବିତା କୁସୁମର ଗୋଟିଏ ସୁରମ୍ୟମାଳା । ଯେଉଁମାନେ ବୈଷ୍ଣବ ସାହିତ୍ୟର ଭକ୍ତିମତ ସଙ୍ଗେ କେବଳ ପରିଚିତ, ସେମାନଙ୍କୁ କବିଙ୍କର ଭକ୍ତି ନୂତନ ବୋଧ ହୋଇପାରେ । କିନ୍ତୁ ଭକ୍ତିର ବିଶାଳତା, କବିଙ୍କ ଉପରେ ବ୍ରାହ୍ମଧର୍ମ ପ୍ରଭାବ ପ୍ରଭୃତି ଦୃଷ୍ଟିରୁ ଆଲୋଚନା କଲେ ତାଙ୍କ ଭକ୍ତିର ଗଭୀରତା ବିଷୟରେ କାହାର ସନ୍ଦେହ ରହିବ ନାହିଁ । ଗଂଗାଧର ମେହେରଙ୍କ 'ଭକ୍ତି-ଗୀତିକା'ଟି' (ବିଶ୍ୱ ଜୀବନଦେ, ତୁମ୍ଭଙ୍କୁ ଇତ୍ୟାଦ ) ଯେପରି କୌଣସି ସାମ୍ପ୍ରଦାୟିକତାରେ ଅବଦ୍ଧ ନୁହେ, ପରଂବ୍ରହ୍ମଙ୍କର ଉପାସକ ମଧୁସୂଦନଙ୍କ ଭକ୍ତିସମ୍ବଳିତ କବିତାବଳୀ ସେହିପରି ଉଦାର । ସେଥିପାଇଁ ସଂପ୍ରଦାୟ ନିର୍ବି-ଶେଷରେ ତାହାଙ୍କ କବିତା ଗୁଡ଼ିକ ଆଦରଣୀୟ । 'ଭକ୍ତକବି' ଏହି ଉପାଧି ବାସ୍ତବରେ ମଧୁସୂଦନଙ୍କ ପକ୍ଷେ ବଡ଼ ସାର୍ଥକ ଓ ମହତ୍ତ୍ୱପୂର୍ଣ୍ଣ ।

———

## କବିଙ୍କ ପ୍ରକୃତି ଚିତ୍ରଣ

ପ୍ରକୃତି ଚିତ୍ରଣ ଯେକୌଣସି ଦେଶରେ କାବ୍ୟ କବିତାର ଗୋଟିଏ ବିଶିଷ୍ଟ ଅଙ୍ଗ । ମଧୁସୂଦନଙ୍କ ପୂର୍ବରୁ ଅନ୍ୟାନ୍ୟ ଦେଶର ସାହିତ୍ୟ ପରି ଓଡ଼ିଆ ସାହିତ୍ୟରେ ମଧ୍ୟ ପ୍ରକୃତି ଚିତ୍ରଣ କାବ୍ୟରେ ଏକ ଅପରିହାର୍ଯ୍ୟ ଅଂଗ ରୂପେ ପରିଗଣିତ ହେଉଥିଲା । ଏପରି କି ପୁରାଣ ସାହିତ୍ୟରେ ଶାରଳାଙ୍କ ମହାଭାରତ ଓ ବଳରାମଙ୍କ ରାମା-ୟଣରେ ମଧ୍ୟ ପ୍ରକୃତିର ଚିତ୍ର ବହୁ ସ୍ଥଳରେ ଦେଖିବାକୁ ମିଳେ । କହିବା ଅନାବଶ୍ୟକ, ଉଦ୍ଦେଶ୍ୟହୀନ ଭାବରେ ପୁରାଣ କବିମାନେ ଏହା କରୁ ନଥିଲେ । ମାନବ ଜୀବନ ପ୍ରକୃତି ସଙ୍ଗେ ଏତେ ଘନିଷ୍ଠ ଭାବରେ ସଂପୃକ୍ତ ଯେ, ତାହାର ପ୍ରେରଣା ବ୍ୟତିରେକେ ମନୁଷ୍ୟ ତାଙ୍କ ସାହିତ୍ୟ ସୌଧ ନିର୍ମାଣ କରିବା ଏକାବେଳକେ ଅସମ୍ଭବ ।

ଉତ୍କଳ ସାହିତ୍ୟରେ ପୁରାଣ ଯୁଗ ଓ ବୈଷ୍ଣବ ଯୁଗ ପରେ ଭଞ୍ଜ ଯୁଗର ଯେତେବେଳେ ସୂତ୍ରପାତ ହେଲା, ସେତେବେଳେ ପ୍ରକୃତିର କମନୀୟ ଚିତ୍ର ବିଭିନ୍ନ ରୂପରେ ଚିତ୍ରଣ କରିବାକୁ କବିମାନେ ଉଦ୍ୟତ ହେଲେ । କିନ୍ତୁ ଆଲୋଚନାରୁ ଜଣା ଯାଏ, ରାଧାନାଥ ଯୁଗ ଓ ଭଞ୍ଜଯୁଗ ମଧ୍ୟରେ ଏହି ଦୃଷ୍ଟିରୁ ପାର୍ଥକ୍ୟର ପରିସର ଯେତେ ବେଶୀ, ଭଞ୍ଜଯୁଗ ଠାରୁ ପୂର୍ବବର୍ତ୍ତୀ ଯୁଗ ଦୁଇଟିର ପାର୍ଥକ୍ୟ ସେତେ ବେଶୀ ନ ଥିଲା । ଆହୁରି ମଧ୍ୟ ଏକଥା ସ୍ପଷ୍ଟ କରିବା ଲାଗି କହା ଯାଇପାରେ, ଭଞ୍ଜଯୁଗରେ ପ୍ରକୃତି ଚିତ୍ରଣର ଯେତେ ବିଭାଗ ପରିସ୍ଫୁଟ ହୋଇଥିଲା, ପାଶ୍ଚାତ୍ୟ ସାହିତ୍ୟ ପ୍ରଭାବରେ ରାଧାନାଥ ଯୁଗର ସେହି ଚିତ୍ରଣ ପୂର୍ବବର୍ତ୍ତୀ ସମସ୍ତ ଯୁଗ ଅପେକ୍ଷା ସମଧିକ ପରିମାଣରେ ବହୁମୁଖୀ ଅତ୍ୟଧିକ ରମଣୀୟ ଓ ତାହାର ମୂଳରେ ନାନାବିଧ ଦୃଷ୍ଟିଭଙ୍ଗୀ ବିଦ୍ୟମାନ ।

ଉତ୍କଳ ସାହିତ୍ୟରେ ପ୍ରକୃତି ଚିତ୍ରଣର ଏହି ଇତିହାସ ମନୋରଞ୍ଜି ଏବଂ ରାଧାନାଥ ଯୁଗର ତତ୍‌ସମ୍ପର୍କୀୟ ବୈଶିଷ୍ଟ୍ୟ ବିସ୍ମୃତ ନ ହୋଇ 'କୁସୁମାଞ୍ଜଳି'ରେ ମଧୁସୂଦନଙ୍କ ପ୍ରକୃତିର ସ୍ୱରୂପ, ସୌନ୍ଦର୍ଯ୍ୟ ଓ ସୌଷ୍ଠବ ଆଲୋଚନା କଲେ ପ୍ରକୃତ ତତ୍ତ୍ୱ ବୁଝିହେବ । କବିଙ୍କୁ ଏ ପ୍ରସଙ୍ଗରେ ଉତ୍କଳର ଓ୍ୱାର୍ଡ୍‌ସ୍‌ଓ୍ୱାର୍ଥ୍ କୁହାଯାଇପାରେ । ସେଲି, କୀଟ୍‌ସ୍, ଟେନିସନ୍ ପ୍ରମୁଖ ଲବ୍ଧ-ପ୍ରତିଷ୍ଠ କବିମାନେ ପ୍ରକୃତିକୁ ଗୋଟିଏ ନିର୍ଦ୍ଦିଷ୍ଟ ଦୃଷ୍ଟିକୋଣରୁ ଦେଖିନାହାନ୍ତି । ସେମାନଙ୍କର ଦୃଷ୍ଟିକୋଣ ଯେ ବହୁତ କ୍ଷେତ୍ରରେ ପରସ୍ପରଠାରୁ ଭିନ୍ନ, ଆଲୋଚନାରୁ ଏକଥା ଜଣାଯାଇଛି । ଏଠାରେ ପୁଣି ସୂଚାଇ ଦେବା ଦରକାର ଯେ ଦୃଷ୍ଟିଭଙ୍ଗୀର ତାରତମ୍ୟ ଓ ବୈଷମ୍ୟ ଅଛି ବୋଲି କୌଣସି ଜଣେ କବି ଅନ୍ୟର ତୁଳନାରେ ନିମ୍ନ ଆସନରେ ଆସୀନ ନୁହନ୍ତି । ବରଂ ଦୃଷ୍ଟିଭଙ୍ଗୀର ପାର୍ଥକ୍ୟ ମଧ୍ୟରେ ବଳିଷ୍ଠ ବ୍ୟକ୍ତିତ୍ୱ ଓ ସୂକ୍ଷ୍ମ ଦୃଷ୍ଟିର କମନୀୟ ରୂପ ପ୍ରକାଶ ପାଇଛି ବୋଲି କୁହାଯାଇ ପାରିବ । ମଧୁସୂଦନଙ୍କର କେବଳ କୁସୁମାଞ୍ଜଳି ପାଠ କଲେ ତାହାଙ୍କୁ ସମ୍ୟକ୍ ଭାବରେ ଚିହ୍ନି ହେବ ନାହିଁ । ଓ୍ୱାର୍ଡ୍‌ସ୍‌ଓ୍ୱାର୍ଥ୍ ଯେପରି ଜୀବନର ବିଭିନ୍ନ ସ୍ତରରେ ପ୍ରକୃତିରୁ ଭିନ୍ନ ଭିନ୍ନ ତଥ୍ୟ ଆବିଷ୍କାର କରିଥିଲେ ଓ ନୂତନ ନୂତନ ଦୃଷ୍ଟିରେ ତାହାର ରୂପ ଦେଖିଥିଲେ, ମଧୁସୂଦନ ସେହିପରି ଅନୁଭୂତିରେ ବୃଦ୍ଧି ଓ ବ୍ରହ୍ମ ଚେତନାର ପରିସର ବିକାଶ ଲାଭ କରିବା ଫଳରେ ବିଭିନ୍ନ ପ୍ରକାରେ ପ୍ରକୃତିର ରୂପ ଦେଖି ପାରିଥିଲେ । କବି-ଜୀବନର ପ୍ରାଥମିକ ଅବସ୍ଥାରେ ଶିଶୁମାନଙ୍କ ପାଇଁ ଯେତେବେଳେ ସେ କବିତା ଲେଖୁଥିଲେ, ପ୍ରକୃତିର ବହିରାବରଣରେ ମୁଗ୍ଧ ହୋଇଥିଲେ । ତରୁଣମତି ଶିଶୁ ଓ ସାଧାରଣ ଦର୍ଶକ ବର୍ଷା ବସନ୍ତ ପ୍ରଭୃତି ଋତୁର ବାହ୍ୟ

ସୌନ୍ଦର୍ଯ୍ୟରେ ଯେପର ଅସ୍ୱାଦ୍ ହୋଇଥାଏ, ମଧୁସୂଦନ ତାହାହିଁ କରିଥିଲେ । ଏଠାରେ ଏକଥା ସ୍ପଷ୍ଟ କରିବା ଲାଗି ଗୋଟିଏ ଦୁଇଟି ଦୃଷ୍ଟାନ୍ତ ଦେଲେ ବୋଧହୁଏ ପ୍ରସଙ୍ଗ ନଷ୍ଟ ହେବ ନାହିଁ ।

କାଆ କାଆ ଶବ୍ଦେ ଘରେ ଘରେ ଶାଇ ।
କୁଆଏ ବୁଲନ୍ତି ଜଗତ ଜଗାଇ ॥
ଗୁହୁଁ ଗୁହୁଁ ରବ ଉଇଁଲା ଗଗନେ ।
ଜୀବର ଚହଳ ପଡ଼ିଲା ଭୁବନେ ॥

(ପ୍ରଭାତ)

କ୍ରମେ ଅନ୍ଧକାର ଆସଇ ଘୋଟି ।
ଉଇଁଲେଣି ତାରା ଗୋଟିକ ଗୋଟି ॥
ଚରା ସାରି ପକ୍ଷୀ ଆକାଶେ ଉଡ଼ ।
ବସାକୁ ଆନନ୍ଦେ ଗଲେ ବାହୁଡ଼ି ॥

(ସନ୍ଧ୍ୟା)

ଭ୍ରମଇ ଭ୍ରମର ଆନନ୍ଦ ମନେ ।
ମଧୁପାନ କରି କୁସୁମବନେ ॥
ନବୀନ ପଲ୍ଲବ ନବ କୁସୁମ ।
ଧରିଅଛି ଦେଖ ରସାଳଦ୍ରୁମ ॥

× × ×

ରକ୍ତବର୍ଣ୍ଣ ରମ୍ୟ ପଲାଶ ବନ ।
ଦୂରରୁ ହରଇ ନୟନ ମନ ॥
କାମିନୀ ମାଳତୀ ଗୋଲାପ ଫୁଲ ।
ଫୁଟିବାରୁ ଉପବନ ମଞ୍ଜୁଳ ॥ (ବସନ୍ତ)

ପ୍ରଭାତ, ସନ୍ଧ୍ୟା ତଥା ବସନ୍ତ କବିତାରୁ ଯେଉଁ ଅଂଶ ଗୁଡ଼ିକ ଉଦ୍ଧାର କରାଯାଇଛି, ତହିଁରୁ ପ୍ରକୃତ ସୌନ୍ଦର୍ଯ୍ୟ ପାନରେ କବିଙ୍କର ସାମର୍ଥ୍ୟ ବେଶ୍ ପ୍ରକାଶ ପାଉଛି । ପ୍ରାକୃତିକ ରମଣୀୟ ରୂପ ପିପାସା ଗ୍ଲାନି ଜୀବନରେ ମଧ୍ୟ ତାଙ୍କଠାରେ ଆତ୍ମପ୍ରକାଶ କରିଥିଲା । ତାହାର ଦୃଷ୍ଟାନ୍ତ କବିଙ୍କ ଜୀବନୀ ଆଲୋଚନାରୁ ଯଥେଷ୍ଟ ମିଳିବ । ଗ୍ଲାନାବସ୍ଥାରେ ପୁରୀରେ ଥିବା ବେଳେ ସମୁଦ୍ରକୂଳରେ ସାନ୍ଧ୍ୟ ଭ୍ରମଣ, କୈଶୋରଗୁରୁ ରାଧାନାଥଙ୍କ ସଙ୍ଗେ ନିକଟବର୍ତ୍ତୀ ଶୈଳର ପ୍ରାକୃତିକ ଦୃଶ୍ୟ ଦର୍ଶନ, ଏ ସମସ୍ତ ଘଟଣାରୁ ଉଲ୍ଲିଖିତ ଉକ୍ତିର ସତ୍ୟତା ପ୍ରମାଣ କରିଦେବ ।

ବ୍ରାହ୍ମ ଧର୍ମରେ ଦୀକ୍ଷିତ ହେବାପରେ ତାଙ୍କର ଧର୍ମପ୍ରାଣତା ବହୁଗୁଣ ବଢ଼ି ଯାଇଥିଲା । ସଂସ୍କୃତ ସାହିତ୍ୟ, ଗୀତା ଓ ଉପନିଷଦ ପ୍ରଭୃତିର ଚର୍ଚ୍ଚା ଦ୍ୱାରା ତାଙ୍କ ହୃଦୟରେ ବ୍ରହ୍ମବାଦ ଦୃଢ଼ ଭାବରେ ପ୍ରତିଷ୍ଠିତ ହେଲା । ନିଷ୍ଠାପର ଭାବରେ ବ୍ରହ୍ମ ଉପାସନା କରିବା ଦ୍ୱାରା ବ୍ରହ୍ମ ଚିନ୍ତା ତାଙ୍କୁ ଏତେଦୂର ପ୍ରଭାବିତ କଲାଯେ, ଜଳ, ସ୍ଥଳ, ଆକାଶ ସବୁଠାରେ ସେ ଅନୁଭବ କଲେ କେବଳ ସେହି ବ୍ରହ୍ମଙ୍କର ବିକାଶ । ବ୍ରହ୍ମଭାବରୂପ ଅଞ୍ଜନ ତାଙ୍କ ମନୋନୟନରେ ପ୍ରଲିପ୍ତ ହେବାରୁ ପରିଦୃଶ୍ୟମାନ ଜଗତରେ ଓ ପ୍ରକୃତିର ରମଣୀୟ ରୂପରେ ସେ ଚିନ୍ତା ଶକ୍ତି ନିବଦ୍ଧ ନ କରି ଅନ୍ତରାଳରେ ପରିବ୍ୟାପ୍ତ ଆନନ୍ଦମୟ ପରମେଶ୍ୱରଙ୍କ ସତ୍ତା ଅନ୍ୱେଷଣ କରିବାକୁ ଉଦ୍ୟତ ହେଲେ । ତାଙ୍କୁ ପ୍ରତୀତ ହେଲା, ପରିଦୃଶ୍ୟମାନ ଜଗତ ନିଷ୍ପନ୍ଦ ନୁହେ, ପ୍ରକୃତି ଜଡ଼ ନୁହେ । ସେ ମନେକଲେ ବସନ୍ତ ଓ ବର୍ଷା, ସୂର୍ଯ୍ୟୋଦୟ ଓ ଚନ୍ଦ୍ରୋଦୟ, ବିରାଟ ହିମାଚଳ ଓ କଳକଳନାଦିନୀ ତଟିନୀ, ମଳୟର ମୃଦୁ

ମନ୍ଦ ହିଲ୍ଲୋଳ ଓ ପ୍ରଳୟ ରୂପୀ ପ୍ରଖର ପବନର ପ୍ରଚଣ୍ଡ ତାଣ୍ଡବ—
ଏ ସବୁ ଅର୍ଥହୀନ ନୁହେ । ସେ ଉପଲବ୍ଧି କଲେ, ଏଗୁଡ଼ିକର
ଅନ୍ତରେ ଅନ୍ତରେ ବିଶ୍ୱବ୍ୟାପକ ଅଜ୍ଞେୟ ଓ ଅଦୃଶ୍ୟ କୌଣସି
ମହାମୟୀ ଶକ୍ତି ଆତ୍ମପ୍ରକାଶ କରୁଛି । ପଦେ କଥାରେ କହିବାକୁ
ଗଲେ ବ୍ରହ୍ମଙ୍କ ମଧୁସୂଦନ ପ୍ରକୃତିର ବାହ୍ୟ କମନୀୟ ରୂପରେ
ଆତ୍ମବିସ୍ମୃତ ନ ହୋଇ ପ୍ରଚାର କଲେ ଯେ, ପ୍ରକୃତିରେ ହୋଇଛି
ପୁରୁଷର ବିକାଶ । ପ୍ରକୃତିର ଅପାର ଜଡ଼ତା ମଧ୍ୟରେ ବିଶ୍ୱଜୀବନ
ପରଂବ୍ରହ୍ମଙ୍କର ନିର୍ଦ୍ଦେଶ କବିଙ୍କ ପ୍ରକୃତି ଚିତ୍ରଣ ମୂଳକ ବୈଶିଷ୍ଟ୍ୟର
ଧ୍ରୁବତାରା କହିଲେ ଅତ୍ୟୁକ୍ତି ହେବ ନାହିଁ । କୁସୁମାଞ୍ଜଳିରେ
ଯେଉଁ କେତୋଟି କବିତା ସଂକଳିତ, ସେଗୁଡ଼ିକରୁ ପ୍ରତ୍ୟେକଟି
କବିଙ୍କର ଗୋଟିଏ ଗୋଟିଏ ବିଶିଷ୍ଟ ମତବାଦ ଓ ସଂଶୟମୟ
ଦୃଷ୍ଟିଭଙ୍ଗୀର ପରିଚାୟକ । 'ଭାରତଭାବନା'ରେ ଯେପରି ଉଗ୍ର
ଦେଶ ପ୍ରେମିକତା 'ଆଶା'ରେ ଯେପରି ବଳିଷ୍ଠ ଆଶାବାଦ,
'ଆତ୍ମସମର୍ପଣ'ରେ ଯେପରି ଗଭୀର ବିଶ୍ୱଭକ୍ତି, 'ମହାଦେବୀ
ଭିକ୍ଟୋରିଆ'ରେ ଯେପରି ଜ୍ୱଳନ୍ତ ରାଜଭକ୍ତି, 'ନବ ଯୁଗର
ଅଭିଷେକ'ରେ ଯେପରି ବ୍ରାହ୍ମଧର୍ମର ମାହାତ୍ମ୍ୟ ପ୍ରକଟିତ ସେହିପରି
'ଏ ସୃଷ୍ଟି ଅମୃତମୟ ହେ' ଓ 'ନବବସନ୍ତ ଭାବନା'ରେ
ଆନନ୍ଦବାଦ ସହ ପ୍ରକୃତିଚିତ୍ରଣର ବୈଶିଷ୍ଟ୍ୟ ପ୍ରକାଶିତ । ବସନ୍ତ
ଚିତ୍ରଣରେ ଶିଶୁ ଦୃଷ୍ଟିର କୋମଳତା ପୂର୍ବ ଉକ୍ତିରୁ ବେଶ୍
ପ୍ରକାଶ ପାଏ । କିନ୍ତୁ ସେହି ଦୃଷ୍ଟି ନବବସନ୍ତ ଭାବନାର ଦୃଷ୍ଟି
ଠାରୁ ଭିନ୍ନ । ଏଥିରେ କବି ପ୍ରକୃତିର ବାହ୍ୟ ରୂପରେ ମଧ୍ୟଦେଇ
ଅଭ୍ୟନ୍ତରର ତଥ୍ୟ ଉଦ୍‌ଘାଟନ କରିଛନ୍ତି ଏବଂ ସେଥିଲାଗି ଅନ୍ୟାନ୍ୟ
କୁହାଯାଇଛି, ଏହି କବିତାଟି କବିଙ୍କ ନିର୍ଦ୍ଦିଷ୍ଟ ଦୃଷ୍ଟିଭଙ୍ଗୀର
ପରିଚାୟକ—ଅନ୍ତତଃ ପ୍ରକୃତି ଚିତ୍ରଣରେ । ନବୀନ ଭାବର

ଉଦ୍‌ବୋଳନରେ କବିକଣ୍ଠ ସୁପରିଣତ ହୋଇ ଉଠିଛି ଏବଂ ଛନ୍ଦରେ ପ୍ରକାଶ ପାଇଛି—

ପ୍ରାଣମନ୍ଦାକିନୀ ପ୍ରବାହ
ମୃତ ଜଡ଼ ପାଷାଣେ
ସଞ୍ଚାରଇ ନବ ପୁଲକ
ଅଦଭୂତ ବିଧାନେ ।

ଏ ନବ ପୁଲକ ପ୍ରକୃତି ରାଣୀର ହୋଇ ପାରେ ନ ପାରେ, କିନ୍ତୁ ଭାବମୟ କବି ଯେ ପ୍ରାକୃତିକ ସୌନ୍ଦର୍ଯ୍ୟ ଦର୍ଶନରେ ପୁଲକିତ ହୋଇ ଉଠିଛନ୍ତି ଏବଂ ଉଦ୍ଧୃତ ପଦ୍ୟଟି ଯେ ସେଇ ପୁଲକର ନିର୍ଦ୍ଦେଶିକା, ଏଥିରେ ସନ୍ଦେହ ନାହିଁ ।

'ନବବସନ୍ତ ଭାବନା'ର ଏହି ଆଭାସ ସଂପ୍ରସାରିତ ହୋଇଛି, 'ଏ ସୃଷ୍ଟି ଅମୃତମୟ ହେ' କବିତାରେ । ଗୀତା ଓ ଉପନିଷଦ୍ ଅନୁସାରେ ବିଶ୍ୱ ମୂଳାଧାର ଓ ବିଶ୍ୱ ଜୀବନହିଁ ବିଶ୍ୱବ୍ରହ୍ମାଣ୍ଡର ଉପାଦାନ ତଥା ନିମିତ୍ତ କାରଣ (ଯଦ୍ୟପି ସାମ୍ପ୍ରଦାୟିକ ଦାର୍ଶନିକ ମାନେ ଏଥିରେ ପୂର୍ଣ୍ଣ ଏକମତ ନୁହନ୍ତି) । କବି କିନ୍ତୁ ବ୍ରହ୍ମବାଦୀ ଥିବାରୁ ଏବଂ ବ୍ରାହ୍ମଧର୍ମର ସିଦ୍ଧାନ୍ତ ଏହି ମତବାଦର ଅନୁକୂଳ ହୋଇଥିବାରୁ ବ୍ରହ୍ମର ବିକାଶ ବିଶ୍ୱବ୍ରହ୍ମାଣ୍ଡରେ ଲକ୍ଷ୍ୟ କରିବା କବିଙ୍କ ପକ୍ଷରେ ସାଧାରଣ କଥା । ଅନନ୍ତ ମହାନ ଉଦାର ଆକାଶ, ଅକୂଳ ଅତଳ ପାରାବାର, ଅମ୍ବରଚୁମ୍ବୀ ପର୍ବତ ଶ୍ରେଣୀ, ଦିଗନ୍ତ ବିସ୍ତାରି ବାୟୁମଣ୍ଡଳର ମୃଦୁ ମଧୁର ହିଲ୍ଲୋଳ, ପ୍ରଖର ବାୟୁର ପ୍ରଚଣ୍ଡ ତାଣ୍ଡବ, ତରୁଲତା ଶୂନ୍ୟ ମରୀଚିକାମୟ ମରୁଭୂମି, ଏ ସମସ୍ତର ଅନ୍ତରାଳରେ ବିଶ୍ୱଜୀବନ ବ୍ରହ୍ମଙ୍କର ଅମର ସତ୍ତା ନିତ୍ୟ

ବସ୍ତୁଜାତ । ତେଣୁ ଏଗୁଡ଼ିକ ନିର୍ଜୀବ ଜଡ଼ ବସ୍ତୁ ନୁହନ୍ତି । କବି ଗାଇଛନ୍ତି—

ମଧୁମୟ ସୃଷ୍ଟି ସୁଧାମୟ ସୃଷ୍ଟି
ଏ ସୃଷ୍ଟି ଅମୃତମୟ ହେ

ସୃଷ୍ଟିର ଯାବତୀୟ ବସ୍ତୁ, ଏପରି କି ଭୀମ ଓ ରୁକ୍ଷ ମରୁସ୍ଥଳୀ ମଧ୍ୟ କବିଙ୍କ ନୟନରେ ମଧୁର ।

ସେ ମରୁ ଅନ୍ତରୁ ବହେ ସୁଧାସ୍ରୋତ
ପିଅ ସେହି ସୁଧାପୟ ହେ ।

କବିତା ଖଣ୍ଡିକରେ ଅମୃତମୟ ଭଗବାନଙ୍କ ବାସସ୍ଥଳୀ ରୂପେ ଅନ୍ୟ ଯେତେ ବସ୍ତୁର ଉଲ୍ଲେଖ ହୋଇଛି, ସେ ମଧ୍ୟରେ ଶ୍ୟାମଳ କ୍ଷେତ୍ର, ତରୁଲତାମୟ ଘନ କାନନ, ନିତ୍ୟ ପ୍ରବହମାନ ନଦନଦୀ, ଭୂଲୋକ ଦ୍ୟୁଲୋକର ଯାବତୀୟ ସର୍ବ ଯନ୍ତ୍ର, ସୂର୍ଯ୍ୟୋଦୟ ସୂଚୀ ଉଷା ଓ ସ୍ନିଗ୍ଧ ଶ୍ୟାମଳ ସନ୍ଧ୍ୟା, ବସନ୍ତ ପ୍ରମୁଖ ଋତୁ, ସାଂସାରିକ ଯାବତୀୟ ଉତ୍କୃଷ୍ଟ ସମ୍ବନ୍ଧ ଓ ସଦ୍‌ଗୁଣର ନାମ ଉଲ୍ଲେଖ୍ୟ । ଶେଷରେ କବି କହିଛନ୍ତି—

ଏ ସକଳ ମଧ୍ୟେ ନିଯନ୍ତା ପ୍ରଭୁ
ଶାଶ୍ୱତ ଅମୃତମୟ ହେ
ଗରଜୁ ଅମୃତ କର ତାହାର
ଅନନ୍ତ ଅମୃତାଳୟ ହେ ।

ଭଗବାନ ଆନନ୍ଦମୟ, ମଙ୍ଗଳମୟ ଓ ଅମୃତମୟ । ବିଶ୍ୱସଂସାର ସେହି ଅନନ୍ତ ସତ୍ତାର ମାୟା ପ୍ରତିଫଳିତ ପ୍ରକାଶ ହୋଇଥିବାରୁ ଅସାରତା, ନୀରସତା ଓ ଅଶୁଚିତା ତହିଁରେ ରହିବା ଅସମ୍ଭବ ।

କବି ମଧୁସୂଦନଙ୍କ ପ୍ରକୃତି ଚିତ୍ରଣର ଏ ରହସ୍ୟ ରାଧାନାଥ ଯୁଗରେ ତାଙ୍କ ମହତ୍ତ୍ୱର ପୂର୍ଣ୍ଣ ପରିଚୟ ଦିଏ । ରାଧାନାଥ, ଫକୀରମୋହନ, ଗଙ୍ଗାଧର ଓ ଗୋପବନ୍ଧୁ ପ୍ରମୁଖ କବିମାନେ ଉତ୍କଳ ଭାରତୀଙ୍କୁ ଯେଉଁ ଅପୂର୍ବ ରୂପରେ ଚିତ୍ରିତ କରି ଯାଇଛନ୍ତି, ଉତ୍କଳ ସାହିତ୍ୟର ଅସ୍ତିତ୍ୱ ଥିବାଯାଏ ତାହା ଗୌରବୋଜ୍ଜ୍ୱଳ ଥିବ । ରାଧାନାଥ ପ୍ରକୃତିର ବହିରାବରଣରେ ମୁଗ୍ଧ । ଭୀଷଣ, ବିକଟ, ବିରାଟ, ଉଦାର ଦୃଶ୍ୟ ଦେଖି ତାଙ୍କର ଯେଉଁ ଭାବ ଜାତ ହୋଇଥିଲା, 'ଚିଲିକା'ରେ ତାହାର ବର୍ଣ୍ଣନା ହୋଇଛି ।

ଭୀଷଣ ବିରାଟ ବିକଟ ଉଦାର ।
ଦୃଶ୍ୟ ଦେଖି ହେଲା ବିସ୍ମୟ ଅପାର ॥
ଚିତ୍ତବୃତ୍ତି ଗଲା ନିଜ ପଥ ଛାଡ଼ି ।
ସତ୍ତା ଗଲା ସେହି ମହାଭାବେ ବୁଡ଼ି ॥

ମାତ୍ର ପ୍ରକୃତିର ଭୀଷଣତା ଓ ବିକଟତା, ନୈସର୍ଗିକ ରୁଦ୍ର ସୁନ୍ଦର ଓ ଭୀମ କମନୀୟ ଦୃଶ୍ୟାବଳୀରେ ମଧୁସୂଦନ ପାଇଛନ୍ତି ଅନନ୍ତ ଆନନ୍ଦର ସଂଧାନ । ଶାନ୍ତିମୟୀ ଚିଲିକାର ଚିତ୍ତବିମୋହନ ବାହ୍ୟ ସୌନ୍ଦର୍ଯ୍ୟରେ ବିଦଗ୍ଧ କବି ରାଧାନାଥ ବିମୁଗ୍ଧ ହୋଇ ଯାଇଥିଲେ । କିନ୍ତୁ ଅମୃତମୟଙ୍କ ଚିଲିକାରେ ବିକାଶର ସୂଚନା ସେ ଦେଇ ନାହାନ୍ତି । କବିବର ଥିଲେ ପ୍ରକୃତିର ଅଦ୍ୱିତୀୟ ଚିତ୍ରକର । ଜୀବନରେ ଥରେ ମାତ୍ର ଯେଉଁଠାରେ ତାହାଙ୍କର ଦୃଷ୍ଟି ପତିତ ହୋଇଛି, ତାହା ଅନନ୍ୟ ସୁନ୍ଦର ଭାବରେ ସେ ଫୁଟାଇ ପାରିଛନ୍ତି । କାବ୍ୟ କବିତାରେ ରାଧାନାଥ ପ୍ରକୃତିର ଯେଉଁ ଅନବଦ୍ୟ ଛବି ଅଙ୍କନ କରିଛନ୍ତି, ବ୍ୟାସକବି ଫକୀରମୋହନ ନିଜର ଅମର

ଉପନ୍ୟାସାବଳୀରେ ତାହା ହିଁ କରିଛନ୍ତି । ମହାଯାତ୍ରାର ବନ୍ଧ୍ୟ ବର୍ଣ୍ଣନା ସଙ୍ଗେ ଲଚ୍ଛମାର ସୋପୋ ଗ୍ରାମ ମାଳଚବତୀ ଅରଣ୍ୟର ବର୍ଣ୍ଣନା ତୁଳନା କଲେ ଏ ଉକ୍ତିର ସତ୍ୟତା ଅବଧାରଣ କରିହେବ । ପ୍ରକୃତିର ମଧୁମୟ କ୍ରୋଡ଼ରେ ପରିବର୍ଦ୍ଧିତ ଗଙ୍ଗାଧର ନୈସର୍ଗିକ ସୌନ୍ଦର୍ଯ୍ୟର ଯେଉଁ ସୁରମ୍ୟ ଚିତ୍ର ଅଙ୍କନ କରିଛନ୍ତି, ତାହାର ବିମଳ କାନ୍ତିରେ କବିଙ୍କର ଗ୍ରନ୍ଥାବଳୀ ନିତ୍ୟ ଉଦ୍ଭାସିତ । ସେ ଯଦ୍ୟପି ପ୍ରକୃତିରେ ପୁରୁଷର ଭୂଷଣତାରେ ସୌନ୍ଦର୍ଯ୍ୟର ସଂଧାନ ପାଇ ନାହାନ୍ତି, ତଥାପି ତାଙ୍କର ଚିରମୁଖରା ପ୍ରକୃତି ମାନବର ସୁଖ ଦୁଃଖରେ ଅଳ୍ପ ଅଂଶୀଦାର ହୋଇନାହିଁ । ରାଧାନାଥଙ୍କ ପ୍ରକୃତି ସୁନ୍ଦରୀ ମନୋହାରିଣୀ ଏବଂ ଅତ୍ୟଳ୍ପ ସ୍ଥଳରେ ମାତ୍ର କର୍ମ-ପ୍ରବଣା, ମାନବର ଅନ୍ତର୍ଜଗତର ଘାତ ପ୍ରତିଘାତ ସଂଗେ ସଂପୃକ୍ତା; କିନ୍ତୁ ଗଙ୍ଗାଧରଙ୍କ ପ୍ରକୃତି ଯେଉଁପରି ନୀତିଶିକ୍ଷା ଦାୟିନୀ, ସେହିପରି ମାନବର ସୁଖ ଦୁଃଖରେ ଭାଗିନୀ, ସେହିପରି ରୂପଲାବଣ୍ୟବତୀ । ଉତ୍କଳମଣି ଗୋପବନ୍ଧୁ ଦାସ ମହାଜାତୀୟତାର ଗମ୍ଭୀର ମନ୍ତ୍ରରେ ଦୀକ୍ଷିତ ହୋଇ ପ୍ରକୃତିର ବିଶ୍ଳେଷଣ କରିଛନ୍ତି । ତାଙ୍କର ପ୍ରକୃତି ମାନବର ସୁଖ ଦୁଃଖରେ ଭାଗିନୀ, ପରାଧୀନର ଉଦ୍‌ବୋଧିନୀ, ଶୃଙ୍ଖଳାବଦ୍ଧର ଆଶ୍ୱାସନା ଦାୟିନୀ ଓ ସୁପ୍ତ ପ୍ରାଣରେ ଦୃପ୍ତ ଜାତୀୟ ଚେତନାର ଜନୟିତ୍ରୀ ।

ପ୍ରବନ୍ଧ ଶେଷ କରିବା ପୂର୍ବରୁ ମଧୁସୂଦନଙ୍କ ପରି ଓ୍ୱାର୍ଡ଼ସ୍‌ଓ୍ୱର୍ଥ କିପରି ପ୍ରକୃତି ରାଣୀର ବର୍ଣ୍ଣନା କରିଛନ୍ତି ତାହାର ନିଦର୍ଶନ ଦେବାଲାଗି ତଳେ ତାଙ୍କର କେତୋଟି ପଂକ୍ତି ଉଦ୍ଧାର କରାଯାଇଛି—

The sounding cataract Haunted me like a passion; The tall rock, the mountain and

**the deep and gloomy wood, their colours and their forms were then to me an appetite, a feeling and a love. That had no need of a remoter charm by thought supplied nor any interest unborrowed from the eye.**

ଅନ୍ୟ କୌଣସି ଅଂଶ ଉଦ୍ଧାର କରିବା ଅନାବଶ୍ୟକ । ଉପରେ ମଧୁସୂଦନ, ରାଧାନାଥ, ଫକୀରମୋହନ, ଗଙ୍ଗାଧର ଓ ଗୋପବନ୍ଧୁଙ୍କର ପ୍ରକୃତି ବର୍ଣ୍ଣନାର ଯେଉଁ ବୈଶିଷ୍ଟ୍ୟ ପ୍ରଦର୍ଶିତ ହେଲା, ତାହା ଆଲୋଚନାର ସୌକର୍ଯ୍ୟ ପାଇଁ କୁହାଯାଇଛି ମାତ୍ର । ତା ନ ହେଲେ ସମସ୍ତ କବିଙ୍କର ଗ୍ରନ୍ଥାବଳୀରେ ପ୍ରକୃତିବର୍ଣ୍ଣନାର ସମସ୍ତ ବିଭବ ନ୍ୟୂନାଧିକ ପରିମାଣରେ ମିଳିବ । ଏହା ମନେ ରଖି ମଧୁସୂଦନଙ୍କର ପ୍ରକୃତିବର୍ଣ୍ଣନା ଆଲୋଚନା କଲେ ବିଶେଷ ଭ୍ରାନ୍ତି ଘଟିବାର ଅବକାଶ ରହିବ ନାହିଁ ।

---

## କବିଙ୍କ ମହାକାଙ୍କ୍ଷୟିତା

ସାହିତ୍ୟରେ ଜାତୀୟ ଭାବର ପ୍ରକଟନ ଆଧୁନିକ ବା ରାଧାନାଥ ଯୁଗର ଗୋଟିଏ ପରମ ବିଶେଷତ୍ୱ । ରାଧାନାଥ, ମଧୁସୂଦନ, ଫକୀରମୋହନ ଓ ଗଂଗାଧର ଏମାନେ ପ୍ରକୃତରେ ଆଧୁନିକ ଯୁଗର ପ୍ରତିଷ୍ଠାତା । ଏହା ଯେବେ ସତ୍ୟ ହୁଏ, ତେବେ ଏହା ନିଃସନ୍ଦେହ ଭାବେ କୁହାଯାଇ ପାରିବ ଯେ, ମଧୁସୂଦନ ଜାତୀୟ ଭାବର ପ୍ରକଟନରେ ଅନ୍ୟମାନଙ୍କର ସମକକ୍ଷ । ବିଶ୍ୱକବି ରବୀନ୍ଦ୍ରନାଥ ମହନୀୟ କବିତା ଝଙ୍କାରରେ ଦେଶବାସୀଙ୍କର

ପ୍ରାଣଭକ୍ତି ପ୍ରମାଣିତ କରିଥାଇ ପାରନ୍ତି । କିନ୍ତୁ ସେ ଅମୀୟ ଝଙ୍କା- ରରେ ଗରଳ ମଧ୍ଯ ଯେ ମିଶ୍ରିତ ହୋଇଥିଲା, ଏହା ଦୃଢ଼ତାର ସହିତ ଉପସ୍ଥାପନ କଲେ ପ୍ରମାଣ ନିର୍ଦ୍ଦେଶ ଲାଗି ବୋଧହୁଏ ସନ୍ଦେହର ଅବକାଶ ରହିବ ନାହିଁ । ନ ହେଲେ କି ବଙ୍ଗଳାର ଯଣେ ଗାନରେ ଦଗ୍‌ଦ୍ଵଦଗ ପ୍ରକମ୍ପିତ ଓଡ଼ିଆଙ୍କୁ ଆକ୍ଷେପ କରି ସେ କହିଥାନ୍ତେ 'ଚୁଟ୍‌କିବାଲା ଉଡ଼େ' । କିନ୍ତୁ ରାଧାନାଥ ପ୍ରମୁଖ କବିମାନେ ଏକପକ୍ଷରେ ଯେପରି ମହାକାଙ୍କ୍ଷାପ୍ରୀତାର ଅମୃତ ପରି- ବେଷଣ କରିଛନ୍ତି, ଅନ୍ୟ ପକ୍ଷରେ ବିକଟ ସଂକୀର୍ଣ୍ଣତାର ଉତ୍କଟ ବିଷଠାରୁ ବହୁଦୂରରେ ରହିଛନ୍ତି । ମଧୁସୂଦନ ଯେପରି ରାଧା- ନାଥଙ୍କର ସୁଯୋଗ୍ୟ ଶିଷ୍ୟ, ସେହିପରି ମହାକାଙ୍କ୍ଷାପ୍ରୀତାର ପ୍ରକଟ- ନରେ ତାଙ୍କ ପଦାଙ୍କ ଅନୁସରଣ କରିବାରେ ଅଗ୍ରଣୀ ।

ରାଧାନାଥଙ୍କ ଚିଲିକା ଓ ମହାଯାତ୍ରା ଗଙ୍ଗାଧରଙ୍କ ଉତ୍କଳ ଲକ୍ଷ୍ମୀ ଓ ଭାରତୀ ଭାବନା, ମଧୁସୂଦନଙ୍କ ଉତ୍କଳ ଗାଥା ଓ କୁସୁମା- ଞ୍ଜଳି ଅନ୍ତର୍ଗତ 'ଭାରତ ଭାବନା'—ଏଗୁଡ଼ିକ ଯଥା କ୍ରମରେ କବିମାନଙ୍କର ଦୀପ୍ତ ଜାତିପ୍ରୀତି ସଂଗେ ମହାକାଙ୍କ୍ଷାପ୍ରୀତାର ଅପୂର୍ବ ସମାବେଶର ପ୍ରତ୍ୟକ୍ଷ ସାକ୍ଷ୍ୟ ଦିଏ । ଏମାନେ ଭାରତ ସମକ୍ଷରେ ନିଜ ଜାତିକୁ ଉନ୍ନତ ଓ ସମ୍ମାନିତ କରିବା ପାଇଁ କେବଳ ବ୍ୟାକୁଳତା ପ୍ରକାଶ କରି ନାହାନ୍ତି; ମହାକାଙ୍କ୍ଷା ଭାବରେ ଅନୁପ୍ରାଣିତ ହୋଇ ସମଷ୍ଟି ଭାବେ ଭାରତର ଉନ୍ନତି ଲିପ୍ସା ଏମାନଙ୍କଠାରେ ଦେଖା ଯାଉଛି ଓ ବିଶ୍ଵ ଦରବାରରେ ସମଗ୍ର ଭାରତକୁ ମହାମହିମ ତଥା ଗୌରବୋଜ୍ଜ୍ଵଳ ଭାବରେ ପ୍ରତିଷ୍ଠା କରିବା ପାଇଁ ଚେଷ୍ଟା କରିଛନ୍ତି । ଭାରତ ଭାବନା କବିଙ୍କ ଗଭୀର ଅନ୍ତରର ଅଦମ୍ୟ ଉତ୍ସ । ବେଦର ଆଦି ଜନ୍ମଭୂମି

ଭାରତ, ବିଶ୍ୱଜ୍ଞାନର ପ୍ରଥମ ଲୀଳାସ୍ଥଳୀ ଭାରତ, ଋଷିମାନଙ୍କର ଗମ୍ଭୀର ବେଦ ପାଠରେ ନିତ୍ୟ ପ୍ରତିଧ୍ୱନିତ ଭାରତ, ଧରାପୃଷ୍ଠରେ ସମସ୍ତ ତେଜ ବାଞ୍ଛି, ସୁଖ ସୌଭାଗ୍ୟର କେନ୍ଦ୍ର ପୀଠ ଭାରତ କଣ ପ୍ରକୃତରେ ଅନ୍ତର୍ହିତ ଭାରତ ? ଭାରତର ଅତୀତ ଗୌରବ ଗାଥା ଚିନ୍ତା କରି କବି ଯେତେବେଳେ ଆଜିର ଭାରତ ଉପରେ ଦୃଷ୍ଟିପାତ କରୁଛନ୍ତି, ତାଙ୍କର ଦୃଷ୍ଟି ପଥରେ ଦଣ୍ଡାୟମାନ ହେଉଛି ଅପି ସନ୍ଦେହ । କବିବର ରାଧାନାଥ ମହାଯାତ୍ରାରେ ଅମର୍ଷୀଙ୍କ ମୁଖରେ ଯେପରି ଫୁଟାଇଛନ୍ତି—

ଏହୁ କି ସେ ଆର୍ଯ୍ୟ ଭୂମି ? ଏ ଭୂମିର ସୁତ,
ଭୁମ୍ନେଛିକି ଆର୍ଯ୍ୟ ନାମ ଦାସ୍ୟାତ ଜଗତେ ?

ସେହିପରି ମଧୁସୂଦନ ମଧ୍ୟ ଲେଖିଛନ୍ତି—

ଏହି କି ସେ ପୁଣ୍ୟ ଭୂମି ? ଭୁବନବନ୍ଦିତ
ସୁବିସ୍ତୀର୍ଣ୍ଣ ରଙ୍ଗଭୂମି ଆର୍ଯ୍ୟ ଗୌରବର !

× × × ×

କେମନ୍ତେ ହା ବରେ ଆଜ କରିବ ବିଶ୍ୱାସ
ଏହି ସେହି ଦେବଭୂମି ବିଶ୍ୱବନ୍ଦନୀୟା !

ପ୍ରକୃତରେ ଭାରତର ଅଧଃପତନରେ ଦେଶପ୍ରେମୀ କେଉଁ ଲୋକର ହୃଦୟ ବିଦୀର୍ଣ୍ଣ ନ ହେବ ! ପୁଣି 'ମହାଯାତ୍ରା'ରେ ଯୁଧିଷ୍ଠିରଙ୍କ ମୁଖରେ ନିମ୍ନୋଦ୍ଧୃତ ଯେଉଁ ମହାଜାତୀୟଭାବ ଫୁଟାଇ ଛନ୍ତି, ତାହା କବିବରଙ୍କ ନିଜର ଭାବ ବୋଲି ମନେହୁଏ—

ବୋଇଲେ ପାଣ୍ଡବ ମଣି, ଆର୍ଯ୍ୟ ଶିରୋମଣି ।
ଭାବି ଆର୍ଯ୍ୟ ଦୁଃଖେ ଦୁଃଖୀ ହେ ଦେବ ଭାରତେ,

ବିଶାଳ ଭାରତେ, ଆହା, ଜଣେ ହୋଇ କେହି
ଜନ୍ମିବ ନାହିଁକି କେବେ ଉଦ୍ଧାରିବା ପାଇଁ
ଆର୍ଯ୍ୟଙ୍କର ପୁରାତନ ଲୁପ୍ତ ଗଉରବ ।

× × × ×

ବୀର ପୁତ୍ର ପ୍ରସୂ, ଆହା, ଏ ମହୀ କି ଆଉ
ପ୍ରସବିବେ ନାହିଁ କେବେ କୁମର ସେଭଳି ।

କବି ମଧୁସୂଦନ ପ୍ରକାରାନ୍ତରରେ ମହାମହିମ ଭାରତର ଆମୂହିକ ଅଧଃପତନ ମନେ ପକାଇ ଖେଦପୂର୍ଣ୍ଣ ହୃଦୟରେ କହିଛନ୍ତି—

ଏହିକି ସେ ବସୁଧାର ସମୁଜ୍ଜ୍ୱଳ ମଣି ?
ଏହି କି ଅମୃତମୟୀ ମୃତ୍ୟୁଞ୍ଜୟ ସନ୍ତାନ ଜନନୀ ?
ଏହି ସେହି ତେଜୋବୀର୍ଯ୍ୟ ଗୌରବ ନିବାସ,
ଯାହାର ସ୍ମରଣେ ଉଲ୍ଲସିତ ବୀର ହିଆ ?

ଗୋପବନ୍ଧୁ, କୁନ୍ତଳା-କୁମାରୀ ବିଭିନ୍ନ ପ୍ରକାରେ ନିଜ ନିଜର ମହାଭାରତୀୟ ଭାବ ପ୍ରକାଶ କରିଛନ୍ତି ।

ହିନ୍ଦୁର ଶରବନ୍ଦ୍ୟ ବେଦର ଜନନୀ ସ୍ୱରୂପିଣୀ ଆର୍ଯ୍ୟ ଋଷି-ମାନଙ୍କର ଧାତ୍ରୀକଳ୍ପା ସରସ୍ୱତୀ ନଦୀର ସେ ଜଳଧାରା ଆଜି ସ୍ୱପ୍ନପ୍ରାୟ । ଦିନ ଥିଲା, ଯେତେବେଳେ ଭାରତ ବକ୍ଷରେ ଶତ-ସହସ୍ର ମୁନି ଋଷି ଆଶ୍ରମ ସ୍ଥାପନ କରି ନିରନ୍ତର ତପସ୍ୟାରେ ନିମଗ୍ନ ଥିଲେ । ମାତ୍ର ଆଜି ସେ ସବୁ କରାଳ କାଳର ଅନନ୍ତ ଗର୍ଭରେ ବିଲୀନ । ସତେ କଣ ଦିନ ଫେରି ଆସିବ ? ଏବଂ

ବଶୀନ୍ଦ୍ର ଦଣିଖୁ, ଅଟଳ ସଂଯମୀ ଅତ୍ରି, ଅଗ୍ନିତୁଲ୍ୟ ତେଜୋବନ୍ତ ଅଙ୍ଗିରା, ତପୋଧନ ବ୍ୟାସ, ଶାନ୍ତିପରାୟଣ ରାଜର୍ଷି ଜନକ ପୁଣି ଥରେ ଅବତୀର୍ଣ୍ଣ ହେବେ ଏବଂ ପାବନ ମନ୍ତ୍ରରେ ପବିତ୍ର ଆଲୋକରେ ଜଗତକୁ ଉଦ୍‌ଭାସିତ କରିବେ ? ଋଷିମାନେ ଏବଂ ସେହି ଗୌରବୋଜ୍ଜ୍ୱଳ ସ୍ମୃତି ଅନ୍ତର୍ହିତ ହେବା ଫଳରେ କବିଙ୍କର ଯେଉଁ ଖେଦ ଆସିଛି ତାହା ଅନିର୍ବଚନୀୟ । କବିଙ୍କ ମାତୃଭୂମି ଭାରତବର୍ଷର ଆଧ୍ୟାତ୍ମିକ ଉତ୍କର୍ଷ ଓ ଶାସ୍ତ୍ରମାନଙ୍କୁ ବର୍ତ୍ତମାନ ବ୍ୟାପକ ଭାବରେ ଚମତ୍କୃତ କରୁ ନ ଥିବାରୁ ତାଙ୍କ ପ୍ରାଣରେ ଦାରୁଣ ଆଘାତ ଲାଗିଛି ।

ପୁଣି ଦିନ ଥିଲା, ଯେତେବେଳେ ଭାରତଜନନୀ ଋଷି-କନ୍ୟା ଓ ଋଷିପତ୍ନୀ ମାନଙ୍କୁ ଧାରଣ କରିଥିଲା, ଯେଉଁମାନେ ସରଳତା ଓ ଦୟାର ଜୀବନ୍ତ ବିଗ୍ରହ, ଯେଉଁମାନେ ପବିତ୍ରତାର ପ୍ରତିମୂର୍ତ୍ତି । ମାତ୍ର ଆଜି ସେ ଆଶ୍ରମ, ସେହି ମୁନିଋଷି, ସେମାନଙ୍କ କନ୍ୟା ତଥା ପତ୍ନୀ, କେହି ନାହାନ୍ତି । ଭାରତ ମାତା ବୀର କ୍ଷତ୍ରିୟା କନ୍ୟାମାନଙ୍କୁ ବକ୍ଷରେ ଧରି ଗର୍ବ ଅନୁଭବ କରୁଥିଲା। ଯେଉଁମାନେ କଟାକ୍ଷ ପ୍ରହାର କରି ନିଜ ନିଜର ପ୍ରାଣନାଥ-ମାନଙ୍କୁ ପ୍ରେମମନ୍ତ୍ର ନୁହେଁ, ବୀରତ୍ୱର ଗମ୍ଭୀର ମନ୍ତ୍ରଦୀକ୍ଷା ଦେଉ-ଥିଲେ, ଆଜିର ବିକଳାଙ୍ଗ ଭାରତ କଣ ସେହି କନ୍ୟାମାନଙ୍କର ଭାରତ ?

କେବଳ ସେତିକି ନୁହେଁ, ସୂର୍ଯ୍ୟ ବଂଶର ଗୌରବମଣି ରାମଚନ୍ଦ୍ର ଓ ମହାଭାରତର ମହାପ୍ରତାପଶାଳୀ ନାୟକ କୌରବ ମାନଙ୍କର ଗୌରବ ଆଜି ଆକାଶକୁସୁମରେ ପରିଣତ । ସୀତା-

ଙ୍କର ଅଟଳ ଅଚଳ ସତୀତ୍ୱ ଆଜିମୁଦ୍ଧା ସଭ୍ୟ ସମାଜର କୌତୂହଳ ଉଦ୍ଦୀପନ କରେ । ରାଜାରୂପେ, ପତିରୂପେ, ପୁତ୍ରରୂପେ, ଏବେ ମଧ୍ୟ ବୀରାଗ୍ରଣୀ ରାମଚନ୍ଦ୍ର ବିଶ୍ୱବନ୍ଦ୍ୟ । ସୁଦୂର ଅତୀତରେ କଲ୍ଲୋଳମାଳାଶୋଭିନୀ ଯମୁନା ସୁନୀଳ ଜଳରାଶି ଧରି ଯେପରି ପ୍ରବାହିତ ହେଉଥିଲା, ଏବେ ମଧ୍ୟ ସେହିପରି ଚାଲିଛି । କିନ୍ତୁ କୌରବ ରାଜଧାନୀର ମହତ୍ତ୍ୱ ଓ ଗୌରବ ଯମୁନା ଜଳରେ ବୁଦ୍ ବୁଦ୍ ପରି ବିଧାତାର ଅଦ୍ଭୁତ ବିଧାନରେ ଏକାବେଳକେ ଅନ୍ତର୍ହିତ । ମହାଭାରତ ବର୍ଣ୍ଣିତ ବୀରମାନଙ୍କର ବୀରତ୍ୱ ସ୍ମରଣ କରି ଆବେଗଭରା କଣ୍ଠରେ କବି ଗାଇଛନ୍ତି —

> ଘୋର ବଇଭବ କୁରୁକ୍ଷେତ୍ର ରଣସ୍ଥଳୀ
> ବିଶାଳ ଜଗତେ କାହିଁ ପଟାନ୍ତର ତାର

ପ୍ରକାରାନ୍ତରେ କବି ଭାରତର ପ୍ରତ୍ୟେକ ନରନାରୀଙ୍କୁ ସମ୍ବୋଧନ କରି କହିଛନ୍ତି, "ହେ ଭାରତବାସୀ ! ମୁନି କନ୍ୟାମାନଙ୍କର ସେହି ସରଳତା, କ୍ଷତ୍ରୀୟ କୁମାରୀମାନଙ୍କର ସେହି ବୀରତ୍ୱ ବିଜଡ଼ିତ କଟାକ୍ଷ ଲୀଳା, ସୀତାଙ୍କର ସେହି ଅକ୍ଷୟ ସତୀତ୍ୱ, ରାମଚନ୍ଦ୍ରଙ୍କର ସତ୍ୟବ୍ରତ ଓ ଉଦାରତା, ମହାଭାରତ ବର୍ଣ୍ଣିତ ବୀରମାନଙ୍କର ଉଗ୍ରତେଜ ଓ ଅଦ୍ୱିତୀୟ ବୀରତ୍ୱ—ଏଗୁଡ଼ିକର ପୁନରୁଦ୍ଧାର କରିବାକୁ ପୁଣି ଚେଷ୍ଟିତ ହୁଅ ।

ଭାରତର ନରପତିମାନେ ରାଜତ୍ୱର ଓ ପ୍ରଜାପାଳନର ଯେଉଁ ଅଖଣ୍ଡ ଆଦର୍ଶ ବିଶ୍ୱମାନବ ସମାଜରେ ଉପସ୍ଥାପିତ କରିଅଛନ୍ତି, ତାହା ଅନନ୍ତ କାଳ ପାଇଁ ସମ୍ମାନିତ ଓ ଆଦୃତ ହେଉଥିବ । ପ୍ରଜାମାନଙ୍କର ଦୁଃଖରେ ଅଧୀର ହୋଇ ଅନ୍ୟାୟ ଓ

କୃଚ୍ଛ୍ରସାଧନ ଉଲ୍ଲେଖ ସାଧନ ପରି ରାଜ ସିଂହାସନ ତ୍ୟାଗ କରି ବୁଦ୍ଧଦେବ ଯେଉଁ ଦୀକ୍ଷା ଗ୍ରହଣ କଲେ, ଯେଉଁ ପଥର ପାନ୍ଥୀ ହେଲେ ତାହାର ପଞ୍ଚାନ୍ତର ଜଗତରେ ବିରଳ। ତାପରେ ବୌଦ୍ଧନରପତି ଅଶୋକ ଓ ହିନ୍ଦୁ ଧାଗ୍ରଣୀ ଚନ୍ଦ୍ରଗୁପ୍ତ ମଧ୍ୟ ଭାରତର ଯେଉଁ ସାମୂହିକ ଉନ୍ନତି କରି ଅଛନ୍ତି ତାହା ଅତ୍ୟନ୍ତ ପ୍ରଶଂସନୀୟ। ଗୁପ୍ତ ସାମ୍ରାଜ୍ୟ ପରେ ହର୍ଷବର୍ଦ୍ଧନଙ୍କ ସମୟରେ ପୁଣି ଥରେ ହିନ୍ଦୁଧର୍ମର ଅଭ୍ୟୁତ୍ଥାନ ହୋଇଥିଲା। ମହାଜାତୀୟତା ଦୃଷ୍ଟିରୁ ଚନ୍ଦ୍ରଗୁପ୍ତଙ୍କର ମହତ୍ତ୍ୱ ଖ୍ୟାପନ କରି କବି କ୍ଷାନ୍ତ ହୋଇ-ଛନ୍ତି। ଶେଷରେ ଲେଖିଛନ୍ତି—

> ଭାରତର ଜୟପ୍ରଭା ଦେଶ ଦେଶାନ୍ତରେ
> ବିସ୍ତାରିଲେ ମହାଜଣା ମହୀପତିଗଣ
> ପ୍ରକୃତିରଞ୍ଜନ ବ୍ରତ ପାଳି ଯତନରେ
> ପ୍ରତିଷ୍ଠିଲେ ଶାନ୍ତିମୟ ସୁଶାସନ ଦିଗ ଦିଗନ୍ତରେ।

ଦେଖାଯାଏ, ପ୍ରତ୍ୟେକ ସ୍ଥଳରେ ସେହି ଅଖଣ୍ଡ ଭାରତର ଗୌରବ କବିଙ୍କୁ ଅନୁପ୍ରାଣିତ କରିଛି ଓ ଭାରତୀୟମାନଙ୍କର ଅମର କୀର୍ତ୍ତିର ଯଶୋଗାନ କରି ସେ ପରମ ଆନନ୍ଦ ଲାଭ କରିଛନ୍ତି।

ମଧୁସୂଦନ କେବଳ ଇଂରାଜୀ, ବଙ୍ଗଳା, ହିନ୍ଦି ପ୍ରଭୃତି ପ୍ରାଦେଶିକ ସାହିତ୍ୟ ଆଲୋଚନା କରି ନ ଥିଲେ। ସଂସ୍କୃତ, ଉପନିଷଦ, ସ୍ମୃତି, ପୁରାଣ ଓ କାବ୍ୟ ନାଟକ ପ୍ରଭୃତି ମଧ୍ୟ ଆଲୋଚନା କରିଥିଲେ। ଭାରତୀୟ ସାହିତ୍ୟର ବିଖ୍ୟାତ ମନୁସ୍ମୃତିରେ ଠାଏ ଲେଖାଅଛି—

ଏତଦ୍ଦେଶ ପ୍ରସୂତସ୍ୟ ସକାଶାଦଗ୍ରଜନ୍ମନଃ
ସ୍ୱଂସ୍ୱଂ ଚରିତ୍ରଂ ଶିକ୍ଷେରନ୍ ପୃଥିବ୍ୟାଂ ସର୍ବ ମାନବାଃ

ଅର୍ଥାତ୍ ଏହି ଦେଶରେ ପ୍ରସୂତ ଅଗ୍ରଜନ୍ମାମାନଙ୍କ ଠାରୁ ପୃଥିବୀର ସମସ୍ତ ଲୋକ ନିଜ ନିଜର ଚରିତ୍ର ଶିକ୍ଷା କରିବେ। ବୋଧହୁଏ ଏହାର ପ୍ରଭାବରେ କବି ଗାଇଛନ୍ତି—

ଏହି କି ସେ ସୁମନୋଜ୍ଞ ଆଶା ସରୋବର
ଯାର ଜ୍ଞାନାମୃତ ପାନେ କୃତାର୍ଥ ଧରଣୀ।

× × × ×

ମାନବ, ମାନସଚକ୍ଷୁ ଜ୍ଞାନ ଅବଦାନର
ପବିତ୍ର ଜନ୍ମଭୂମି ତେଣୁ ମହିମାମୟୀ
ଯେପରି ପୂର୍ବାଶା, ଜଗତ ଉଜ୍ଜ୍ୱଳ ସୁନ୍ଦର
ଶୈଶବୀୟ ଲୀଳାଭୂମି ଲୋକଚକ୍ଷୁ ଦେବ ତପନର।

ସାଧାରଣ ଭାବୁକର ହୃଦୟ ଏହି ମହାଜାତୀୟ ଚିନ୍ତାରେ ଆଲୋଡ଼ିତ ହେବା ସମ୍ଭବ ନୁହେ। ମଧୁସୂଦନ ବିଶ୍ୱ ମୈତ୍ରୀ ଓ ବ୍ରହ୍ମତତ୍ତ୍ୱ ପ୍ରଚାର କରି ହୃଦୟବୃତ୍ତିର ଯଥେଷ୍ଟ ନିଦର୍ଶନ ଦେଇଛନ୍ତି ଏବଂ ମହାନୁଭାବୁକତା, ମହା ପ୍ରାଣତା, ମହୋଦାରତା ଓ ମହାଜାତୀୟ ଚେତନାର ଦୀପ୍ତ ଆଲୋକ ବିକୀରଣ କରିବାକୁ ସେ ଯେତେଦୂର ଚେଷ୍ଟିତ, 'ଭାରତ ଭାବନା' ତାହାର ସୂଚନା ଏବେ ମଧ୍ୟ ଦେଉଅଛି।

# କବିଙ୍କ ରଚନାଶୈଳୀ

ଉତ୍କଳ ସାହିତ୍ୟରେ କାବ୍ୟଗତ ରଚନାଶୈଳୀର ଗୋଟାଏ ବିଶିଷ୍ଟ ପରମ୍ପରା ଦେଖିବାକୁ ମିଳେ । କବି ମଧୁସୂଦନଙ୍କ ରଚନାଶୈଳୀ ଆଲୋଚନା କଲାବେଳେ ସେହି ପରମ୍ପରାର ସୂଚନା ଏକାନ୍ତ ଆବଶ୍ୟକ; କାରଣ ତଦ୍ଦ୍ୱାରା ଆଧୁନିକ ଶୈଳୀର ସ୍ୱରୂପ ଓ ସୌଷ୍ଠବର ଅବଧାରଣା ସମ୍ୟକ ଭାବରେ କରିହେବ । ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟର ଭାଷା ପ୍ରାୟଶଃ ସର୍ବଜନବୋଧ୍ୟ ଥିଲା । ଛନ୍ଦ ଗୁଡ଼ିକର ସଂଖ୍ୟା ମଧ୍ୟ ଅପେକ୍ଷାକୃତ ଅଳ୍ପ ଥିଲା । ଉପେନ୍ଦ୍ର ଭଞ୍ଜ ରଚନାଶୈଳୀରେ ସର୍ବ ପ୍ରଥମେ ଉଲ୍ଲେଖ୍ୟ ପରିବର୍ତ୍ତନ ସଂଘଟିତ କରିଥିଲେ । ପାଣ୍ଡିତ୍ୟପୂର୍ଣ୍ଣ ଓ ଆଡମ୍ବରମୟ ଶବ୍ଦାବଳୀର ପ୍ରୟୋଗ, ନାନାବିଧ ରାଗରାଗିଣୀରେ ଗେୟ ଛନ୍ଦର ଅବଲମ୍ବନ, ଉପମା, ରୂପକ ପ୍ରଭୃତି ଅଲଂକାର ଓ ଅନୁପ୍ରାସ, ଶ୍ଳେଷ ପ୍ରଭୃତି ଶବ୍ଦାଲଂକାର ଅତିମାତ୍ରାରେ ତାଙ୍କ କାବ୍ୟ-ମାନଙ୍କରେ ଆତ୍ମପ୍ରକାଶ କଲା । କବିବର ରାଧାନାଥ ଆଧୁନିକ ଯୁଗ ଓ ରୁଚିର ଅନୁରୂପ ନବୀନ ଶୈଳୀ ପ୍ରବର୍ତ୍ତନ କରିବା ଫଳରେ ଭଞ୍ଜୀୟ ଶୈଳୀ ଆଉ ଅଖଣ୍ଡିତ ରହିଲା ନାହିଁ । ରାଧାନାଥ ଯୁଗର ବରେଣ୍ୟ କବି ମଧୁସୂଦନ ନବପ୍ରବର୍ତ୍ତିତ ଶୈଳୀ କେତେଦୂର ରକ୍ଷା କରିପାରିଛନ୍ତି ଓ ସେହି ଶୈଳୀର ସ୍ୱରୂପ ଯେ କଣ, ତାହାହିଁ ବର୍ତ୍ତମାନ ଆଲୋଚ୍ୟ ।

ଅଧ୍ୟାପକ ପ୍ରିୟରଞ୍ଜନ ସେନ୍ ସ୍ୱୀୟ "Modern Oriya Literature" ନାମକ ଇଂରାଜୀ ଗ୍ରନ୍ଥରେ ମଧୁସୂଦନଙ୍କ ସମ୍ବନ୍ଧେ ଯେଉଁ ଆଲୋଚନା "ଶାଗ କଅଁରି କ ଭଟା ପାଚେରି"

ନ୍ୟାସ୍ତରେ କରିଛନ୍ତି, ତହିଁରେ ମଧ୍ୟ ମଧୁସୂଦନଙ୍କ ଶୈଳୀର ଗୋଟାଏ ବିଶେଷତ୍ୱ ଉଲ୍ଲିଖିତ ହୋଇଅଛି । ସେ ଲେଖିଛନ୍ତି—

**Madhusudan's literaty output is not so large as that of Radhanath, but he was a metrist with sufficient skill. Experimenting with many fashions in versification, he produced a book of sonnets and wrote a number of elegies."** ମଧୁସୂଦନ ଗ୍ରନ୍ଥାବଳୀ ସଙ୍ଗେ ରାଧାନାଥ ଗ୍ରନ୍ଥାବଳୀର ତୁଳନା କଲେ ଜଣାଯାଏ, ସଂଗୀତପ୍ରାଣ ଉତ୍କଳରେ ମଧ୍ୟଯୁଗରେ ଯେଉଁ ରାଗରାଗିଣୀ କାବ୍ୟ ଗୁଡ଼ିକର ଜନପ୍ରିୟତା ସଂପାଦନ କରିଥିଲା, ସେଗୁଡ଼ିକ ଉପରେ ରାଧାନାଥଙ୍କ ଅପେକ୍ଷା ମଧୁସୂଦନଙ୍କର ଅପେକ୍ଷାକୃତ ଅଧିକ ଆଧିପତ୍ୟ ଥିଲା । ସେଥିପାଇଁ ସେ ସକୁଲ୍ୟା, କାମୋଦୀ ପ୍ରଭୃତିର ଆଶ୍ରୟ ନେଇଛନ୍ତି । ସଙ୍ଗୀତ ମାଳାରେ କବିଙ୍କ ସଂଗୀତପ୍ରିୟତା ପ୍ରତିଫଳିତ । ଅବଶ୍ୟ ସେ ଲେଖିଅଛନ୍ତି, ସଙ୍ଗୀତମାଳାର ପ୍ରାୟ ସମସ୍ତ ସଂଗୀତ ଓଡ଼ିଆ ଓ ବଙ୍ଗଳା ରାଗିଣୀରେ ରଚିତ । କେବଳ ଗୋଟିଏ ସଂସ୍କୃତ ଛନ୍ଦରେ ଏବଂ ଗୋଟିଏ ହସୀଗ୍ରନ୍ଥ ଅଞ୍ଚଳର ବାଦନାଧ ଅନୁକରଣରେ ଲିଖିତ । ଓଡ଼ିଆ ଭାଷାରେ ଅନ୍ୟ ଭାଷାର ରାଗିଣୀ ସମ୍ମତ ସଙ୍ଗୀତ ଲେଖିବା ଦୋଷାବହ ବୋଲି ବିବେଚିତ ହେବ ନାହିଁ ।" ସଙ୍ଗୀତ ମାଳାର ଅନେକ ସଙ୍ଗୀତ ଆଦୌ ଉଚ୍ଚ ଦରର ନୁହେ । ତଥାପି ସେଗୁଡ଼ିକରୁ କବିଙ୍କ ସ୍ୱରପ୍ରିୟତା ପ୍ରକାଶ ପାଏ ।

ଛନ୍ଦର ପ୍ରୟୋଗରେ କବିଙ୍କ ଦକ୍ଷତା ଯଥେଷ୍ଟ ଥିଲା । ମାଳହଂସକେଦାର ଓ ସକୁଲ୍ୟା ବୃତ୍ତର ପ୍ରୟୋଗ କେତେକ

ସ୍ଥଳରେ ଅତ୍ୟନ୍ତ ମନୋରମ ହୋଇଛି । ଜୀବନଶନ୍ତା ପଷ୍ଟରେ ସେହି ବୃତ୍ତ ଯେପରି ଗମ୍ଭୀର ଓ ଭାବପ୍ରକାଶକ, ଭାରତ ଭାବନାର ଚତୁର୍ଦ୍ଦଶାକ୍ଷରୀ ବୃତ୍ତ ସେହିପରି ଭାବର ଅନୁରୂପ ।

ଏହି କି ଭାରତ ଯାର ମହିମା ସଂଗୀତ
ଗମ୍ଭୀର ଝଙ୍କାରେ ପୂର୍ଣ୍ଣ ଦିଗ ଦିଗନ୍ତର
ଏହି କି ସେ ସୁମନୀଙ୍କ ଆଶା ସରୋବର
ଯାର ଜ୍ଞାନାମୃତ ପାନେ କୃତାର୍ଥ ଧରଣୀ ।

ବାସ୍ତବରେ ଏହା ପାଠ କଲେ ଭାବର ଜାଗ୍ରତରେ ହୃଦୟ ପୂରି ଉଠେ । ଋଷିପ୍ରାଣେ ଦେବାବତରଣର ଶେଷରେ ଯେଉଁ ବ୍ରହ୍ମସ୍ତୁତି କରାଯାଇଛି, ତାହା ମଧ୍ୟ ଭାବର ଅନୁରୂପ । ସାର କଥା, ଛନ୍ଦ ଉପରେ କବିଙ୍କର ଦଖଲ ଯଥେଷ୍ଟ ଥିବାରୁ ସ୍ଥଳ-ବିଶେଷରେ ଦୋଷ ଦୁର୍ବଳତା ସତ୍ତ୍ୱେ ସେ ଭାବ ଗୁଡ଼ିକୁ ସମୁଚିତ ଛନ୍ଦରେ ବ୍ୟକ୍ତ କରି ପାରିଛନ୍ତି ।

କବିଙ୍କ ଭାଷା ବଡ଼ ସଂଯତ ଓ ପ୍ରାଞ୍ଜଳ । ଭାଷା ଦେଖି କେବେ କେବେ ଲେଖକର ନାମ ନିର୍ଦ୍ଦେଶ କରିହେବ । ସେଥି ପାଇଁ ଇଂରାଜୀରେ ଗୋଟିଏ କଥା ଅଛି —"The style is the man ।" ଭାବୋଚ୍ଛ୍ୱାସରେ ଯାହା ଲେଖାମାନ୍ତ ନିର୍ଗତ ହେଉଥିଲା, ତାହାଦ୍ୱାରା କବି ସନ୍ତୁଷ୍ଟ ହେଉ ନ ଥିଲେ । ଲିଖିତ ଅଂଶ ବାରମ୍ବାର ପରୀକ୍ଷା କରି ଦରକାର ହେଲେ ପରିବର୍ତ୍ତନ କରୁଥିଲେ । ବିଶେଷତଃ ତାଙ୍କ ପରବର୍ତ୍ତୀ ଜୀବନର କବିତା ଗୁଡ଼ିକ ଭାବ-ଗାମ୍ଭୀର୍ଯ୍ୟରେ ପୂର୍ଣ୍ଣ ଥିବାରୁ ଭାଷାଲାଳିତ୍ୟ ପ୍ରତି ବିଶେଷ ଦୃଷ୍ଟି ଦେଇ ଥିବାପରି ଜଣା ଯାଉନାହିଁ । 'ନବବସନ୍ତ ଭାବନା'

ଅପେକ୍ଷା ମଧୁର ପଦବିନ୍ୟାସ ଓ ତରଳ ରଚଣ ଦୃଷ୍ଟିରୁ ଛନ୍ଦମାଳାର 'ବସନ୍ତ' ବହୁଅଂଶରେ ଉତ୍କୃଷ୍ଟ । କିନ୍ତୁ ଗମ୍ଭୀର ଭାବର ପ୍ରକଟନରେ 'ବସନ୍ତ' ବହୁ ନିମ୍ନରେ । ଦାର୍ଶନିକ ଭାବ କୁସୁମାଞ୍ଜଳିର ଯେଉଁ କବିତାମାନଙ୍କରେ ପୂରି ରହିଛି, ଭାଷା ସଂଯମ ସେଗୁଡ଼ିକରେ ଅତ୍ୟଧିକ ପରିମାଣରେ ଦେଖାଯାଏ । ଦୃଷ୍ଟାନ୍ତ ସ୍ୱରୂପ—

ଅମୂର୍ତ୍ତି ମୂରତି ଅଦ୍ୱା ରୂପ ନିରୁପମ<br>
ଅନନ୍ତ ଅନଳ, ବ୍ୟାପି ସ୍ଥାବର ଜଙ୍ଗମ<br>
ଦେଶ କାଳାତୀତ ଦୃଶ୍ୟ କଳନା ଅତୀତ<br>
ଅଥଚ ଜ୍ୟୋତିର ଜ୍ୟୋତି ଚକ୍ଷୁ ଅଗ୍ରେ ସ୍ଥିତ<br>
ଦୂରରୁ ସୁଦୂର ଶବ୍ଦବାକ୍ୟ ଅଗୋଚର<br>
ନିକଟୁ ନିକଟ ପ୍ରାଣ ସମଗ୍ର ପ୍ରାଣର ।

ଉପନିଷଦର ଅବଲମ୍ବନରେ ଏହି ପଦ୍ୟ ଗୁଡ଼ିକ ରଚିତ ହୋଇଥିବାରୁ ଶବ୍ଦ ବିନ୍ୟାସରେ କଠୋର ସଂଯମ ଦେଖାଯାଏ । ଅନାବଶ୍ୟକ ଶବ୍ଦ ଓ ଅପ୍ରାକୃତିକ ଭଙ୍ଗୀ ମଧୁସୂଦନଙ୍କ କବିତାବଳୀରେ ଦେଖିବାକୁ ମିଳେ ନାହିଁ ।

କବିଙ୍କ ଶୈଳୀର ସୌନ୍ଦର୍ଯ୍ୟ ବର୍ଦ୍ଧନରେ ସାର୍ଥକ ଶବ୍ଦାବଳୀର ବିନ୍ୟାସ ସବାଦୌ ଲକ୍ଷ୍ୟ କରିବାର କଥା । ଜୀବନ-ଶନ୍ତାରେ ଯେଉଁ ଶବ୍ଦାବଳୀ ପ୍ରୟୋଗ କରି କବି ଭଗବାନଙ୍କୁ ସମ୍ବୋଧନ କରିଛନ୍ତି, ନିଜର ଦୀନତା ପ୍ରତିପାଦନ କରିଛନ୍ତି, ସେଗୁଡ଼ିକ ଅତ୍ୟନ୍ତ ସାର୍ଥକ ଓ ଏକାନ୍ତ ଅର୍ଥପୂର୍ଣ୍ଣ । କୁସୁମାଞ୍ଜଳିରେ ମଧ୍ୟ ସେହି କଥା । ନବବସନ୍ତ ଭାବନାର ଅଧିବ୍ୟାଧି ଏବଂ ପ୍ରେୟ

ଓ ଶେଷ୍ଟ, ଆଶାର ଆଶାପ୍ରଭାମୟୀ ଓ ବିଶ୍ୱାସମୂଳକ, ବ୍ରହ୍ମାଣ୍ଡ ଧାରିଣୀ, ଆତ୍ମସମର୍ପଣର ସବତା, ଭାରତଭାବନାର ପ୍ରଥମ ଦୁଇ-ଖଣ୍ଡର ଭାରତର ଗୌରବବୋଧକ ବାକ୍ୟାବଳୀ, ଉଦ୍‌ବୋଧନର ଦୟାମୟୀ ଓ ଜ୍ୟୋତିର୍ମୟୀ, ଋଷିପ୍ରାଣେ ଦେବାବତରଣ ବ୍ରହ୍ମସ୍ୱରୂପବୋଧକ ସମସ୍ତ ଶବ୍ଦ ବଡ଼ ଗମ୍ଭୀର ଅର୍ଥପୂର୍ଣ୍ଣ । ଆଧୁନିକ କବିମାନଙ୍କର ଭାଷା ଓ ଶବ୍ଦଗତ ଏହି ମୌଳିକ ତତ୍ତ୍ୱ ଉପରେ ଆଦୌ ଦୃଷ୍ଟି ଥିବାପରି ଜଣାଯାଉନାହିଁ । କୌଣସି ଗୋଟାଏ ଶବ୍ଦ କ୍ଲିଷ୍ଟ କିମ୍ବା ସ୍ଥାନବିଶେଷରେ କବିତାର ଲାଳିତ୍ୟବର୍ଦ୍ଧକ ହୋଇ ନ ପାରେ; କିନ୍ତୁ ତହିଁରେ ଯେବେ ଅର୍ଥଗୌରବ ଥାଏ, ତାହା ପ୍ରୟୋଗ କରିବାକୁ କବି ସର୍ବଦା ଉଦ୍‌ବିଗ୍ନ ଥିଲେ । କବିଙ୍କର ଦୃଷ୍ଟି ନ ଥିଲା କବିତାର ବାହ୍ୟ ରୂପରେ, ଥିଲା ଅନ୍ତରର ପ୍ରକୃତ ଅର୍ଥରେ । ମଧୁସୂଦନଙ୍କ ପାଠକବର୍ଗ ଏହା ମନେ ରଖି ଚର୍ଚ୍ଚା କଲେ କେତେକ କବିତାର ଅପାଠ ଓ ବାସ୍ତବ ଲାଳିତ୍ୟଭାବର ମୂଳସୂତ୍ର ଧରି ହେବ ।

ଅଳଙ୍କାର ପ୍ରୟୋଗରେ ମଧୁସୂଦନ ବିଶେଷ ଦକ୍ଷତା ପ୍ରଦର୍ଶନ କରି ନାହାନ୍ତି । ତଥାପି ଅନୁପ୍ରାସର ପ୍ରୟୋଗ ସ୍ଥାନେ ସ୍ଥାନେ କବିତାର ମାଧୁର୍ଯ୍ୟ ବୃଦ୍ଧି କରିଛି । ଭଞ୍ଜଯୁଗର ଆଲଂକାରିକତା ଓ ରାଧାନାଥଙ୍କର ନାନାବିଧ ଅଲଂକାରର ପ୍ରୟୋଗ ମଧୁସୂଦନ ଗ୍ରନ୍ଥାବଳୀରେ ଆଦୌ ପରିଦୃଷ୍ଟ ହୁଏ ନାହିଁ । କବି ଥିଲେ ଭାବୁକ; ତେଣୁ ରସଜ୍ଞ ଓ ରସିକ । କବିସୁଲଭ ପ୍ରେମରସ ତାଙ୍କର ଆନନ୍ଦଦାୟକ ନ ଥିଲା । ଆଲଂକାରିକତା ଅପେକ୍ଷା ଭାବୁକତା ତାଙ୍କ କବିତାବଳୀର ଦମ୍ୟତର ସମ୍ପଦ । ତେଣୁ ଯେଉଁଠାରେ ଶବ୍ଦାଲଂକାର ଫୁଟି ଉଠିଛି, ସେଠାରେ କବିଙ୍କ

ଧର୍ମଶୀଳତା ଓ ଚେଷ୍ଟା ଥିବା ପରି ପ୍ରତୀତ ହେଉ ନାହିଁ ।
ଅନୁପ୍ରାସର ଗୋଟିଏ ଦୁଇଟି ଦୃଷ୍ଟାନ୍ତ ତଳେ ଦଆଯାଉଛି ।

(୧) ପଲବେ ପଲ୍ଲବ ଦୁକୂଳ
ପିନ୍ଧି ଧରଣୀରାଣୀ
ପୁଲକ ପୂରିତ ଅନ୍ତରେ
ପୂଜେ ବଣ୍ଟବନ୍ଧାଣୀ ।

(୨) ସ୍ଥାବର ଜଙ୍ଗମ ପଶୁ ବହଙ୍ଗମ
କୀଟ ପତଙ୍ଗମଚୟ ହେ ।

(୩) ମଦ୍ଧା ପୁଲକରେ ତନୁ ପ୍ରେମାଶ୍ରୁ ପୂରିତ
କଦମ୍ବ କେଶର ପ୍ରାୟେ କେଶ କଣ୍ଟକିତ

(୪) ତବ ଜ୍ଞାନ ପ୍ରେମ ଶକ୍ତି ଅତୁଳ
ଶର ଅବଜ୍ଞାତ ଅବଳାକୁଳ
କଳଙ୍କ ଭଞ୍ଜନେ ମାନ ବର୍ଦ୍ଧନେ
ବହୁଳ ବଲ୍ଲଭ ଭବ ଭବନେ
ତେଣୁ ମହୀଳା ସମ୍ମାନ
ମହୀ-ମହନୀୟା ବୋଲି ଜଗତରେ
ହେଉଅଛି ବର୍ଦ୍ଧମାନ ।

ଚୌଣ୍ଟି ଯମକ ପ୍ରଭୃତି ରାଧାନାଥଯୁଗର ଶବ୍ଦ କସରତର
ଚରମ ଦୃଷ୍ଟାନ୍ତ ରୂପେ ସମାଲୋଚିତ ହୋଇଥିବାରୁ ଏବଂ କେବଳ
ଭାବ ବା ରସର ସ୍ଫୁରଣ କରିବାର ମୁଖ୍ୟ ବସ୍ତୁ ରୂପେ ଗୃହୀତ ଓ

ଅଦ୍ଭୁତ ଦେଖିବାକୁ ମଧୁସୂଦନ ତେହ ଦଗଦେର ଅବ୍ଦୌ ମନ ବଳାଇ ନାହାନ୍ତି ।

ଅର୍ଥାଲଂକାରର ବହୁଳ ପ୍ରୟୋଗ ପ୍ରତି କବି ବିଶେଷ ଦୃଷ୍ଟି ଦେଇ ନ ଥିଲେ ହେଁ କେତେକ ସ୍ଥଳରେ ଉପମା ଓ ରୂପକର ପ୍ରୟୋଗ ଅତ୍ୟନ୍ତ ରମଣୀୟ ହୋଇଛି ।

"ମାନବ ମାନସ-ଚକ୍ଷୁ ଜ୍ଞାନ ଆଦିତ୍ୟର
ପବିତ୍ର ଉଦ୍ଭବସ୍ଥଳୀ ତେଣୁ ମହାମାୟା
ଯେସନ ପୂର୍ବାଶା ଉଷା ଉତ୍ସଙ୍ଗ ସୁନ୍ଦର
ଶୈଶବୀୟ ଲୀଳାଭୂମି ଲୋକଚକ୍ଷୁ ଦେବ ତପନର ।"

ଏହା ଅପେକ୍ଷା ରୂପକ ଅଲଂକାର ପ୍ରୟୋଗ ଆହୁରି ସୁନ୍ଦର ।

ଆଶା ପାରିଜାତ ଫୁଟିବ
ହୃଦ-ନନ୍ଦନ ବନେ
ଜ୍ଞାନ ଭକ୍ତି କର୍ମ ସୌରଭ
ବ୍ୟାପିଯିବ ଜୀବନେ ।

'ନବଯୁଗର ଅଭିଷେକ'ରେ ସେହିପରି ପରମ୍ପରିତ ରୂପକର ସୁନ୍ଦର ପ୍ରୟୋଗ ହୋଇଛି ।

କିନ୍ତୁ ଅଲଂକାର ଅପେକ୍ଷା ରାଧାନାଥ ଯୁଗର ଅନ୍ୟ ଏକ ବିଶେଷତ୍ୱ ମିତାକ୍ଷର ମୂଳକ ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ମଧୁସୂଦନ ସିଦ୍ଧହସ୍ତ ଥିଲେ ।

ସହସା ଫିଟିଲା ଋଷି ଲୋଚନ କମଳ
ଖେଳେ ତହିଁ ଆହା କିବା ଜ୍ୟୋତି ସୁବିମଳ

ବାହ୍ୟ ଅଭ୍ୟନ୍ତର ଭେଦ ଏବେ ନାହିଁ ଆଉ
ଧଣି ଧଣି ଏକ ଜ୍ୟୋତ ଦଶେ ଦିଗ ଦାଉ ।

କୁସୁମାଞ୍ଜଳିରେ ପୂର୍ଣ୍ଣ ମିତ୍ରାକ୍ଷର ରକ୍ଷିବା ଲାଗି କବି ପ୍ରଗାଢ଼ ଚେଷ୍ଟା କରିଛନ୍ତି । କେବଳ କୁସୁମାଞ୍ଜଳି ନୁହେ, ସମଗ୍ର ଗ୍ରନ୍ଥାବଳୀରେ ଏ ବୈଶିଷ୍ଟ୍ୟ ପ୍ରକଟିତ କରି କବିତାର ଗୌରବ ବର୍ଦ୍ଧନ କରିଛନ୍ତି । ପୂର୍ଣ୍ଣ ମିତ୍ରାକ୍ଷର ଅପେକ୍ଷା ଏକାନ୍ତର ପ୍ରୟୋଗ କରିବା ପାଇଁ କବି ବିଶେଷ ଇଚ୍ଛୁକ ଥିଲେ । ଭାରତ ଭାବନା ଯଦ୍ୟପି ପୂର୍ବାପୂର ଏହି ନିୟମରେ ଲିଖିତ ନୁହେ, ତଥାପି ତହିଁରୁ କବିଙ୍କର ରଚନା-ଶୈଳୀ ସହଜରେ ଅନୁମେୟ ।

କାହିଁ ସେହି ନଦୀ ପୁଣ୍ୟତୋୟା ସରସ୍ୱତୀ,
ଯାର କୂଳେ ଋଷି କଣ୍ଠେ ସ୍ଫୁରନ୍ତି ଗମ୍ଭୀରେ,
ଶୁଣ ସ୍ତୁତ ବେଦରୂପେ ମୋହି ବସୁମତୀ
ଅମୃତ ସଙ୍ଗୀତ ତାନେ ଉଚ୍ଛୁସିତା ଧୀରେ,
ହୃଦୟର ଉଚ୍ଚତମ ଆଶା ଲହରୀରେ ।

କବିଙ୍କ ରଚନାଶୈଳୀରେ ଗୋଟାଏ ମାଦକତା ଓତଃପ୍ରୋତ ଭାବେ ବିଜଡ଼ିତ, ଯାହା ଭାବୁକ ମାନେ ଉପଲବ୍ଧି କରିପାରନ୍ତି । ଭାଷାର ପ୍ରାଞ୍ଜଳତା ଓ ଭାବର ଗମ୍ଭୀରତା, ନାନାବିଧ ବୃତ୍ତ ଓ ଅନୁପ୍ରାସ, ରୂପକ ପ୍ରଭୃତିର ପ୍ରୟୋଗ କବିଙ୍କ ଶୈଳୀର ସମ୍ୟକ୍ ସୂଚନା ଦିଏ । ଯେ କୌଣସି ଯୁଗରେ କବିମାନଙ୍କର ରଚନାଶୈଳୀ ପରସ୍ପରର ଏତେ ନିକଟ ସଂପୃକ୍ତ ଥାଏ ଯେ, ହଠାତ୍ କବିତାର କିୟଦଂଶ ଶୁଣି କବିଙ୍କୁ ଅତି ସହଜରେ ଚିହ୍ନିହେବ ନାହିଁ । ତଥାପି "The Style is the man' ଯେବେ ସତ ହୁଏ, ତେବେ

ଭାବ-ଗାମ୍ଭୀର୍ଯ୍ୟ ଓ ତଦନୁରୂପ ଶବ୍ଦ ସଂକଳିତ କବିତା, ଭକ୍ତି ତଥା ଚିନ୍ତା ଉନ୍ମେଷକ ତତ୍ତ୍ୱ ପ୍ରକଟନ ପ୍ରଭୃତିରୁ ମଧୁସୂଦନଙ୍କୁ ଚିହ୍ନି ହେବ । ଠାଏ ଠାଏ କବିତ୍ୱର ପୂର୍ଣ୍ଣ ମର୍ଯ୍ୟାଦା ରକ୍ଷିତ ହୋଇ ପାରି ନାହିଁ, କବିତା ଗଦ୍ୟମୟ ହୋଇ ଯାଇଛି, ତଥାପି ଭାବୁକ ମଧୁସୂଦନ ସେ ଗୁଡ଼ିକୁ ଭ୍ରୂକ୍ଷେପ କରି ନାହାନ୍ତି । ରାଧାନାଥଙ୍କର ମାଧୁର୍ଯ୍ୟ ମଧୁସୂଦନଙ୍କଠାରେ ନାହିଁ; ମହାଯାତ୍ରାର ଶବ୍ଦ ସୌଷ୍ଠବରେ କବି ନିଜ କବିତା ସୁନ୍ଦରୀଙ୍କର ଶୋଭା ବର୍ଦ୍ଧନ କରି ପାରି ନାହାନ୍ତି । ତଥାପି ଭାବ ଓ ଚିନ୍ତାର ଗାମ୍ଭୀର ଅଭିବ୍ୟକ୍ତିରେ ମଧୁସୂଦନ ସ୍ୱୀୟ କବିତ୍ୱର ସାର୍ଥକତା ନିର୍ଦ୍ଦେଶ କରିଛନ୍ତି । ଗୀତି କବିତାବଳୀର ରଚନା ଦ୍ୱାରା କବି ଉତ୍କଳ ସାହିତ୍ୟକୁ ସମୃଦ୍ଧ କରିଛନ୍ତି ଓ ଗୀତି-ପ୍ରଧାନ ଆଧୁନିକ କାବ୍ୟ-ସାହିତ୍ୟର ମୂଳଭିତ୍ତି ତାଙ୍କ ଦ୍ୱାରା ସେ ସୁଦୃଢ଼ କରି ଯାଇଛନ୍ତି । ନବୀନ ଶୈଳୀର ସୂତ୍ରପାତ କରି ରାଧାନାଥ ଯେଉଁ ପରିମାଣରେ ଉତ୍କଳ ସାହିତ୍ୟର ଶ୍ରୀ ବର୍ଦ୍ଧନ କରିଛନ୍ତି, ତାହାଙ୍କର ଅନୁଗାମୀ ହୋଇ ଓ ସ୍ୱାତନ୍ତ୍ର୍ୟ ରକ୍ଷାକରି ମଧୁସୂଦନ ସେହି ପରିମାଣରେ ପ୍ରଶଂସାର ପାତ୍ର ହୋଇ ପାରିଛନ୍ତି ।

---

## କବିଙ୍କ ବ୍ୟକ୍ତିତ୍ୱ

କୁସୁମାଞ୍ଜଳି କବି ମଧୁସୂଦନଙ୍କର ସର୍ବଶ୍ରେଷ୍ଠ କବିତାସଂଗ୍ରହ । କାବ୍ୟ ଯେବେ କବି ଅନ୍ତରର ପ୍ରତିଚ୍ଛବି ହୁଏ, କୁସୁମାଞ୍ଜଳି ଅପେକ୍ଷା ଅନ୍ୟ କେଉଁଠାରେ ମଧୁସୂଦନଙ୍କ ହୃଦୟର ବିମଳ ପ୍ରତିବିମ୍ବ ସ୍ପଷ୍ଟତର ଭାବେ ଦେଖିବାକୁ ମିଳିବ ? କାବ୍ୟ ଯେବେ କବି-ହୃଦୟଗତ ଭାବାବଳୀର ମୂର୍ତ୍ତିମନ୍ତ ବିଗ୍ରହ ହୁଏ, କୁସୁମାଞ୍ଜଳି

ବ୍ୟତୀତ ମଧୁସୂଦନଙ୍କ ହୃଦୟସ୍ଥ ଭକ୍ତି ଭାବେ ଶିକ୍ଷିବା ଲାଗି ଅନ୍ୟ କେଉଁଠାରେ ଅନୁସଂଧାନ କରିବାକୁ ପଡ଼ିବ ? ସଂକ୍ଷେପରେ କହିବାକୁ ଗଲେ କବିଙ୍କ ହୃଦୟସ୍ଥିର ସମସ୍ତ ଆବେଗ, ମନର ସମସ୍ତ ଭକ୍ତି ଶ୍ରଦ୍ଧା, ମାର୍ଜିତ ରୁଚିର ସମସ୍ତ ବିଭାବ, କଳ୍ପନାର ସମସ୍ତ ଶୃଙ୍ଖଳା, କବିତ୍ୱର ଅମନ୍ଦ ଅଭିବ୍ୟକ୍ତି, ମୌଳିକତାର ପରାକାଷ୍ଠା କାବ୍ୟ କବିତାରେ ପ୍ରକାଶ ପାଇଥାଏ । ମଧୁସୂଦନ ମହା କାବ୍ୟ ଲେଖି ନ ଥିଲେହେଁ ଉତ୍କଳ ସାହିତ୍ୟକୁ ଅଳ୍ପ ସଂଖ୍ୟକ କବିତା ଦାନ କରି ନାହାନ୍ତି । ଆଲୋଚନା କଲେ ଦେଖାଯିବ, କୁସୁମାଞ୍ଜଳିରେ ଥିବା କବିତାଗୁଡ଼ିକ ଅତ୍ୟନ୍ତ ଉଚ୍ଚ ଦରର । ମଧୁସୂଦନଙ୍କର ମହତ୍ତ୍ୱ ଓ ବଳିଷ୍ଠ ବ୍ୟକ୍ତିତ୍ୱ କେବଳ କୁସୁମାଞ୍ଜଳି ପାଠରୁ ଯଦ୍ୟପି ପୂରାପୂରି ଜାଣିହେବ ନାହିଁ, ତଥାପି ଅନ୍ୟ ସମସ୍ତ କବିତା ସଂଗ୍ରହ ଅପେକ୍ଷା ଏହି ଗୋଟିକରୁ ନିଶ୍ଚୟ ସମଧିକ ପରିମାଣରେ ଜାଣି ହେବ ।

ମଧୁସୂଦନ ବାଲ୍ୟକାଳରୁ ବଡ଼ ଧୀଶକ୍ତିସମ୍ପନ୍ନ ଓ ଗମ୍ଭୀର ପ୍ରକୃତିର ଥିଲେ । ଧର୍ମଭାବ ମଧ୍ୟ ତରୁଣ ବୟସରୁ ତାଙ୍କଠାରେ ଆତ୍ମପ୍ରକାଶ କରିଥିଲା । ବ୍ରାହ୍ମ ଧର୍ମରେ ଦୀକ୍ଷିତ ହେବା ପରେ ତାଙ୍କର ଧର୍ମଭାବ ଓ ଶିକ୍ଷକତା ଗ୍ରହଣ କରିବା ପରେ ତାଙ୍କର ଧର୍ମକ୍ଷେତ୍ର ଭିନ୍ନ ଆକାର ଧାରଣ କଲା । ଇଂରାଜୀ, ବଙ୍ଗଳା, ହିନ୍ଦୀ, ମରହଟ୍ଟୀ, ସଂସ୍କୃତ ଓ ଓଡ଼ିଆ ସାହିତ୍ୟ ଆଲୋଚନା କରିବା ଫଳରେ ତାଙ୍କର କବିତ୍ୱ ନବୀନ ରୂପରେ ନୂତନ ଶୈଳୀରେ ବିକାଶ ଲାଭ କଲା । କୁସୁମାଞ୍ଜଳିର କବିତାଗୁଡ଼ିକୁ ଆଲୋଚନା କଲେ ସ୍ପଷ୍ଟ ଜାଣିହେବ, ସେ ଗୁଡ଼ିକ ଦିନକର ଲେଖା ନୁହେଁ । ଜଣେ ଯେଉଁ ପ୍ରତିଭାବାନ୍ ହେଲେହେଁ ତାହାର ବିକାଶରେ ବିଭିନ୍ନ ସ୍ତର

ପରିଲକ୍ଷିତ ହୁଏ । ଉଚ୍ଚ ଚିନ୍ତା, ଉପଭୋଗ୍ୟ କଳ୍ପନା, ସଂଯତ ଭାଷା ଓ ତରଳ ମଧୁର ଅଭିବ୍ୟକ୍ତି, ଏ ସମସ୍ତରୁ କୁସୁମାଞ୍ଜଳିର ଅନ୍ତର୍ଗତ କବିତା ରଚିତ ହେବା ସମୟକୁ କବିଙ୍କ କବିତ୍ୱ ପରିପକ୍ୱ ଅବସ୍ଥାରେ ଉପନୀତ ହୋଇଥିବା ସହଜରେ ଅନୁମେୟ । ପ୍ରାୟ କୋଡ଼ିଏ ବର୍ଷ ବୟସରେ କବିଙ୍କର ସାହିତ୍ୟିକ ଜୀବନ ଆରମ୍ଭ ହୋଇଥିଲା । କୁସୁମାଞ୍ଜଳି ପ୍ରାୟ ତାହାର ତିରିଶ ବର୍ଷ ପରେ ପ୍ରକାଶ ପାଇଥିଲା । ଏହି ଦୀର୍ଘ ତିରିଶ ବର୍ଷର ସାଧନା କୁସୁମାଞ୍ଜଳିର ଭିତ୍ତିରୂପେ ଦଣ୍ଡାୟମାନ କହିଲେ ବୋଧହୁଏ ଅତ୍ୟୁକ୍ତି ହେବନାହିଁ ।

କୁସୁମାଞ୍ଜଳିର ପ୍ରତ୍ୟେକ କବିତା ମଧୁସୂଦନଙ୍କ ମନୋରାଜ୍ୟର ଗୋଟିଏ ଗୋଟିଏ ମହତ୍ତ୍ୱ ଓ ଗୌରବ ଭଣ୍ଡାରର କୁଞ୍ଚିକା ସ୍ୱରୂପ । ପ୍ରତ୍ୟେକଟିର ଆଲୋଚନାରୁ ତାଙ୍କ ମନୋରାଜ୍ୟର କୌଣସି କୌଣସି ବିଶିଷ୍ଟ ଭାବୁକତାର ପରିଚୟ ମିଳେ । 'ନବ ବସନ୍ତ ଭାବନା' ବସନ୍ତ କାଳର ମଧୁର ଚିତ୍ର ଅଙ୍କନ କରିବାକୁ ଯାଇ କବିଙ୍କ ଆନନ୍ଦବାଦର ଇଙ୍ଗିତ ଦେଇଛନ୍ତି ଏବଂ ଏହି ଇଙ୍ଗିତ ମୋହନ ରୂପସଂପଦରେ 'ଏ ସୃଷ୍ଟି ଅମୃତମୟ ହେ' ରେ ଆତ୍ମପ୍ରକାଶ କରିଛି । ଋତୁ ଚିତ୍ରଣରେ ମଧୁସୂଦନ ସିଦ୍ଧହସ୍ତ ଏବଂ ଛନ୍ଦମାଳାର ତଦ୍‌ବିଷୟକ କବିତା ଗୁଡ଼ିକ ଏହାର ଅକାଟ୍ୟ ପ୍ରମାଣ । 'ନବ ବସନ୍ତ ଭାବନା' ରଚନା କରିବା ପୂର୍ବରୁ ବସନ୍ତ ମାଧୁରୀରେ ମୁଗ୍ଧ ହୋଇ ପ୍ରଫୁଲ୍ଲ ଚିତ୍ତରେ ସେ ଋତୁରାଜ୍ୟର ଅନନ୍ୟସୁନ୍ଦର ଚିତ୍ର ଦେଇଥିଲେ; କିନ୍ତୁ କୁସୁମାଞ୍ଜଳିର ବସନ୍ତର ଚିତ୍ରଣ ପୂର୍ବବର୍ତ୍ତୀ ଚିତ୍ରଣ ଗୁଡ଼ିକଠାରୁ ଅନେକାଂଶରେ ପୃଥକ୍ । ଏଇ ପାର୍ଥକ୍ୟ ମଧ୍ୟରେ କବିଙ୍କ ଆନନ୍ଦବାଦର ଇଙ୍ଗିତ

ଉଲ୍ଲେଖଯୋଗ୍ୟ । ବସନ୍ତ ଆଗମନରେ କବି ପ୍ରକୃତିର ସୌନ୍ଦର୍ଯ୍ୟ ପାନରେ କେବଳ ବ୍ୟସ୍ତ ହୋଇ ନାହାନ୍ତି । ବରଂ ଯେତେବେଳେ—

ପ୍ରାଣ ମନ୍ଦାକିନୀ ପ୍ରବାହ
ମୃତ ଜଡ଼ ପାଷାଣେ
ସଂସ୍ଫୁରଇ ନବ ପୁଲକ
ଅଦଭୁତ ବିଧାନେ ।

ଠିକ୍ ସେତିକିବେଳେ ସେ ହୃଦୟକୁ ସମ୍ବୋଧନ କରି କହିଛନ୍ତି—

କିନ୍ତୁ କାହିଁକି ରେ ହୃଦୟ
ଆଧି ବ୍ୟାଧି ନିଳୟେ,
ଜରାଜୀର୍ଣ୍ଣ ମୃତ ପରାୟେ
ପଡ଼ି ରହିଛୁ ଭୟେ ।

କବିଙ୍କ ବିଷାଦ ବାଦ ଏଠାରେ ସୂଚିତ, କିନ୍ତୁ ଅମୃତମୟ ସଂସାରରେ କବି ବିଷାଦକୁ ସ୍ଥାନ ଦେଇ ନାହାନ୍ତି । ମୋହାନ୍ଧକାର ଅପସାରିତ ହେବାପରେ କବିଙ୍କର ଯେଉଁ ଜ୍ଞାନୋଦୟ ହୋଇଥିଲା, ତାହାର ବିଶଦ ବର୍ଣ୍ଣନା ସେ କରିଛନ୍ତି । ସେ ଲେଖିଛନ୍ତି—

ଅପସରିଗଲା ସହସା
ସେହି ଘୋର ତିମିର ।
ଉଇଁଲା ହୃଦୟ-ଆକାଶେ
ମହାଜ୍ଞାନ ମିହିର ।

ଏ ଯେଉଁ ମହାଜ୍ଞାନ ଉଦିତ ହେଲା, ତହିଁରେ ସେ ନିଜର ଅନ୍ତରରେ ଦେଖିଥିଲେ—

ଅନନ୍ତ-ଜୀବନ-ଆଧାର
ସତ୍ୟ-ଶିବ-ସୁନ୍ଦର

ସତ୍ୟ ଶିବ ସୁନ୍ଦରଙ୍କର ଏହି ସୂଚନା ପରବର୍ତ୍ତୀ କବିତାରେ ସୁବ୍ୟକ୍ତ ହୋଇଛି । କବି ଜଳ ସ୍ଥଳ ଆକାଶ ପ୍ରଭୃତିରେ କେବଳ ଅମୃତର ସନ୍ଧାନ ପାଇଛନ୍ତି । ନିଜେ ତ ଭଗବତ୍‌ସତ୍ତାର ଅମୀୟ ବିକାଶରେ ଉଦ୍‌ବୁଦ୍ଧ । ମାତ୍ର ଅନ୍ୟମାନଙ୍କୁ ସେଇ ଆନନ୍ଦ ପରିବେଷଣ କରିବାପାଇଁ ସେ ନିରୁଦ୍ୟମ ନୁହନ୍ତି । ସେ ବଜ୍ର ଗମ୍ଭୀର ସ୍ୱରରେ ପ୍ରଚ୍ଛର କରୁଛନ୍ତି—

ଏ ସକଳ ମଧ୍ୟେ ନିବସନ୍ତି ପ୍ରଭୁ
ଶାଶ୍ୱତ ଅମୃତମୟ ହୋ
(ତେଣୁ)ମଧୁମୟ ସୃଷ୍ଟି ସୁଧାମୟ ସୃଷ୍ଟି
ଏ ସୃଷ୍ଟି ଅମୃତମୟ ହୋ ।
ଜାଗ ନର ନାରୀ ଅମୃତସନ୍ତତି
ପିଅ ସେ ଅମୃତପୟ ହୋ ।

କବି ବ୍ରାହ୍ମଧର୍ମାବଲମ୍ବୀ । ବ୍ରାହ୍ମମାନେ ତତ୍କାଳୀନ ହିନ୍ଦୁସମାଜକୁ ନାନା କୁସଂସ୍କାରପୂର୍ଣ୍ଣ ଓ ଆବର୍ଜ୍ଜନାମୟ ମନେ କରୁଥିଲେ । ବ୍ରାହ୍ମଧର୍ମର ଉପଦେଶ ସେମାନଙ୍କୁ ଗୋଟାଏ ନବୀନ ଯୁଗର ସୂତ୍ରପାତ ପରି ବୋଧ ହେଉଥିଲା । କବି ବ୍ରାହ୍ମଧର୍ମର ଏହି ଭାବରେ ଅନୁପ୍ରାଣିତ ଥିଲେ, ଯଦ୍ୟପି ନିଜର ଅସୀମ ଉଦାରତା ହେତୁ ସମସ୍ତଙ୍କୁ ଯଥାଯୋଗ୍ୟ ଶ୍ରଦ୍ଧା ସମ୍ମାନ ଦେଖାଉଥିଲେ । 'ନବଯୁଗର ଅଭିଷେକ' ଯଥାର୍ଥରେ କବିଙ୍କର ସଂସ୍କାରପ୍ରିୟତା, ଉଦାରତା, ସତ୍ୟପ୍ରିୟତା ଓ ବ୍ରହ୍ମ ଉପାସକତା ପ୍ରଭୃତିର ପରିଚୟ ହେଉଛି ।

'ଆଶା' ଏବଂ 'ଉଦ୍‌ବୋଧନ'ରେ କବିଙ୍କ ଆଶା ଓ ବିଶ୍ୱାସବାଦ ପ୍ରକାଶ ପାଇଛି । ଆଶାବାଦ ବିଷାଦବାଦର ପ୍ରତିକୂଳ ।

ଧର୍ମଗ୍ରନ୍ଥର ବିକାଶ ଓ ଉପନିଷଦ ପ୍ରଭୃତିର ପରିଶୀଳନ ଦ୍ୱାରା କବିଙ୍କର ବ୍ରହ୍ମଭକ୍ତି, କର୍ମପ୍ରବଣତା ଓ ଜ୍ଞାନପିପାସା ମଧ୍ୟ ବୃଦ୍ଧି ଲାଭ କରିଥିଲା । ବୋଧହୁଏ ସେହି କାରଣରୁ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଗ୍ରନ୍ଥଚର୍ଚ୍ଚା ତାଙ୍କର ଅନବରତ ଚାଲିଥିଲା ଓ ଭଗ୍ନସ୍ୱାସ୍ଥ୍ୟ ହେଲେହେଁ ବହୁ ଉପାଦେୟ କର୍ମ କରିବାରେ ସେ ସର୍ବଦା ଚେଷ୍ଟିତ ଥିଲେ । 'ନବ ବସନ୍ତ ଭାବନା'ରେ ନିଜର ଅନୁଭୂତି ବୋଧହୁଏ ସେ ପ୍ରକାରାନ୍ତରରେ ପ୍ରକାଶ କରିଛନ୍ତି—

ଆଶା ପାରିଜାତ ଫୁଟିବ
ହୃଦ-ନନ୍ଦନ-ବନେ
ଜ୍ଞାନ-ଭକ୍ତି-କର୍ମ-ସୌରଭ
ବ୍ୟାପିଯିବ ଭୁବନେ ।

ଆଶାବାଦୀ କବିଙ୍କର ଗଭୀର ବିଶ୍ୱାସ 'ଉଦ୍‌ବୋଧନ' କବିତାରୁ ବୋଧ୍ୟ । କବିଙ୍କର ଭକ୍ତିମତ୍ତା ଯେପରି ଭାବରେ କୁସୁମାଞ୍ଜଳିରେ ପ୍ରକାଶ ପାଇଛି, ତହିଁରୁ ତାଙ୍କୁ ପରମଭକ୍ତ କହିଲେ ଅତ୍ୟୁକ୍ତି ହେବ ନାହିଁ । 'ଆତ୍ମ ସମର୍ପଣ'ରୁ ଜଣାଯାଏ, ସେ କେବଳ ଭକ୍ତ ନ ଥିଲେ, ଥିଲେ ଦାର୍ଶନିକ ମଧ୍ୟ ।

ମଧୁସୂଦନ ରାଧାନାଥ ଯୁଗର ଅନ୍ୟତମ ବିଶେଷତ୍ୱ ଜାତୀୟ ଭାବ ପ୍ରବର୍ତ୍ତନରେ ଉଦ୍ୟତ ଥିଲେ । ଉତ୍କଳର ଅତୀତ ଗୌରବ ସେ 'ଉତ୍କଳଗାଥା'ରେ ଶତମୁଖରେ କୀର୍ତ୍ତନ କରି ଯାଇଛନ୍ତି । କିନ୍ତୁ ଇଂରେଜ କବି **Rudyard Kipling** ଙ୍କ ପରି ଉତ୍କଳୀୟମାନଙ୍କର ଅତୀତ ଗୌରବ ଗାନକରି ଅନ୍ୟମାନଙ୍କୁ ଅସମ୍ମାନ ପ୍ରଦର୍ଶନ କରି ନାହାନ୍ତି । ଜାତୀୟତା ସଙ୍ଗେ ମହାଜାତୀୟତାର ମଧୁର ମିଶ୍ରଣ ରାଧାନାଥ, ମଧୁସୂଦନ, ଗଙ୍ଗାଧର, ଗୋପବନ୍ଧୁ, ପ୍ରଭୃତିଙ୍କଠାରେ ଦେଖିବାକୁ ମିଳେ । 'ଭାରତ ଭାବନା'ରେ

କବି ମହାଭାରତୀୟ ଭାବରେ ଅନୁପ୍ରାଣିତ ହୋଇଛନ୍ତି । ଭାରତର ସମୃଦ୍ଧ ଉନ୍ନତିରେ କବିଙ୍କ ହୃଦୟ ଯେପରି ଉଦ୍‌ବେଳିତ, ଭାରତର ଅବନତିରେ ତାଙ୍କ ହୃଦୟ ସେପରି ଦୁଃଖରେ ଜର୍ଜ୍ଜରିତ ହୋଇ ଯାଇଛି ।

କବି ଅଧ୍ୟାତ୍ମବାଦୀ । 'ଋଷିପ୍ରାଣେ ଦେବାବତରଣ' ଓ 'ଆତ୍ମସମର୍ପଣ' ଏ ଦୁଇଟିରେ ଭାରତୀୟ ପ୍ରସ୍ଫୁରିତ ଅଧ୍ୟାତ୍ମବାଦର ବ୍ୟାଖ୍ୟା କରାଯାଇଛି । ଜୀବାତ୍ମା ଓ ପରମାତ୍ମାଙ୍କ ସମ୍ବନ୍ଧ, ମଙ୍ଗଳମୟ ଭଗବାନଙ୍କର ଅମୃତମୟ ସୃଷ୍ଟିର ଉଦାର ଆଦର୍ଶ, ଏ ଦୁଇଟି କବିତାରେ ପ୍ରକଟିତ । ବେଦାନ୍ତ ତତ୍ତ୍ୱ ବର୍ଣ୍ଣନା ସହ "ସର୍ବଂ ବ୍ରହ୍ମମୟଂ ଜଗତ୍" ଏହି ବିଶ୍ୱ ବିଖ୍ୟାତ ଭାରତୀୟ ତତ୍ତ୍ୱର ସରଳ ସୁନ୍ଦର ପ୍ରକାଶ କବିଙ୍କ ଲକ୍ଷ୍ୟ । କବି ଅଧ୍ୟାତ୍ମବାଦରେ କେତେଦୂର ନିମଜ୍ଜିତ ଥିଲେ, ତାହା ଏ କବିତା ଦୁଇଟିରୁ ଜାଣିହୁଏ । ବିଶେଷତଃ ଋଷିମୁଖରେ ସେ ଯେଉଁ ବ୍ରହ୍ମ ସ୍ତୁତି ପ୍ରକାଶ କରିଛନ୍ତି; ତାହା ପ୍ରକୃତପକ୍ଷେ କବିଙ୍କ ନିଜ ସ୍ତୁତି—

"ଜାଣିଅଛୁ ପରାତ୍ପର ଏ ପ୍ରାଣ ବିଧାତା,
ଅଟ ହେ ପ୍ରତ୍ୟକ୍ଷ ତୁମ୍ଭେ ବିଶ୍ୱ ପିତା ମାତା ।
ଏକ ଅଦ୍ୱିତୀୟ ପ୍ରଭୁ ସର୍ବ ମୂଳାଧାର
ଏକମାତ୍ର ପରମାତ୍ମା ବ୍ରହ୍ମ ନିରାକାର ।
× × ×
ବିରାଜ ବିରାଜ ଦେବ ହେ ଅମୃତମୟ
ତୁମ୍ଭର ଅମୃତ ରୂପେ ପୂରୁ ଏ ହୃଦୟ ।

କବିଙ୍କର ରାଜଭକ୍ତି ଅଟଳ ଥିଲା । ମହାରାଣୀ ଭିକ୍ଟୋରିଆ ଏବଂ ଶୋକ ଲହରୀରେ ଯେଉଁ ରାଜଭକ୍ତି ବର୍ଣ୍ଣିତ, ତାହା ବାସ୍ତବରେ ଭକ୍ତି ନୁହେ, ତାହା ବିଶ୍ୱାସୀ ଓ ଧର୍ମପ୍ରାଣର ଅନ୍ତରର ବାଣୀ ।

କବିତା ଗୁଡ଼ିକୁ ସମଷ୍ଟି ଭାବରେ ଆଲୋଚନା କଲେ କବିଙ୍କ ବ୍ୟକ୍ତିତ୍ୱ ଅଧିକ ସ୍ପଷ୍ଟ ହେବ । ଉପରି ଆଲୋଚନାରୁ କବିଙ୍କ ବ୍ୟକ୍ତିତ୍ୱର ବିଭିନ୍ନ ଦିଗ ସୁସ୍ପଷ୍ଟରୂପେ ପ୍ରଦର୍ଶିତ । ସେ ସତ୍ୟବାଦୀ, ସରଳପ୍ରାଣ, ନିଷ୍ଠାପର କର୍ମୀ, ସାହିତ୍ୟସେବୀ, ଦେଶହିତୈଷୀ ଏବଂ ପରମଭକ୍ତ । ଭକ୍ତ-ରାଧାନାଥଙ୍କ ପରି ପ୍ରେମର ଛନ୍ଦଣ ତାଙ୍କ ଗ୍ରନ୍ଥାବଳୀରେ ନ ଥିଲେହେଁ ତାଙ୍କ ଶୈଳୀ ସର୍ବଥା ନୂତନ, ତାଙ୍କ ରୁଚି ମାର୍ଜିତ, ତାଙ୍କ ସରଳତା ଓ ଧର୍ମପ୍ରାଣତା ସର୍ବଥା ପ୍ରଶଂସନୀୟ । ବୈଷ୍ଣବବାଦ ସମ୍ପ୍ରଦାୟର ଉପାସ୍ୟ ଦେବତା ତାଙ୍କର ଧ୍ୟେୟ ନ ଥିଲେ; ଥିଲେ ବ୍ରାହ୍ମଧର୍ମ ଅନୁମୋଦିତ ଉପନିଷଦ ପ୍ରତିପାଦିତ ପରଂବ୍ରହ୍ମ । ତେଣୁ ଜାତି ଧର୍ମ ନିର୍ବିଶେଷରେ ତାଙ୍କର କବିତାବଳୀ ପାଠ କରିବାକୁ କୁଣ୍ଠିତ ହୁଅନ୍ତି ନାହିଁ । ଭାଷା ଉପରେ ତାଙ୍କର କମ୍ ଅଧିପତ୍ୟ ନ ଥିଲା । ସଂଗୀତପ୍ରାଣ ଉତ୍କଳର ଉପଯୋଗୀ ହେବବୋଲି ନାନା ରାଗ ରାଗିଣୀରେ ସେ ବହୁ ସଂଗୀତ ରଚନା କରି ଯାଇଛନ୍ତି । ଭାଷାର ପ୍ରାଞ୍ଜଳତା ଓ ସାଧାରଣ ରଚନାଶୈଳୀରେ ରାଧାନାଥ ଯେପରି ଜଣେ ପ୍ରଧାନ ସଂସ୍କାରକ, ସାହିତ୍ୟିକ ରୁଚିର ମାର୍ଜନା ଓ ଗୀତିକବିତାର ସୌଧ ଗଢ଼ିବାରେ ମଧୁସୂଦନ ସେହିପରି ଏକ ନବୀନ ଯୁଗର ପ୍ରତିଷ୍ଠାତା । ମଧୁସୂଦନ ବହୁସଂଖ୍ୟକ ଭକ୍ତି ଶାନ୍ତିସମ୍ବଳିତ ଗୀତକବିତାଦ୍ୱାରା ଉତ୍କଳର ଯେଉଁ ଶ୍ରୀବୃଦ୍ଧି କରିଛନ୍ତି, ତାଦ୍ୱାରା ଚିରଦିନ ଉତ୍କଳରେ ତାଙ୍କୁ ସମ୍ମାନିତ ଓ ଜନପ୍ରିୟ କରି ରଖିଥିବ ।

ମୁଦ୍ରାକର—ନରେନ୍ଦ୍ରଚନ୍ଦ୍ର ପ୍ରଧାନ, ପ୍ରଜାତନ୍ତ୍ର ପ୍ରେସ କଟକ—୧୯୪୮